# ଯୁଗେ ଯୁଗେ
# ଓଡ଼ିଆ କବିତା

ସଂଗ୍ରାହକ
ଡକ୍ଟର ଗୋପାଳ ଚନ୍ଦ୍ର ମିଶ୍ର





ଯୁଗେ ଯୁଗେ

# ଓଡ଼ିଆ କବିତା

(ଓଡ଼ିଆ କବିତା ସଂଗ୍ରହ)

ସଂଗ୍ରାହକ

**ଡକ୍ଟର ଗୋପାଲଚନ୍ଦ୍ର ମିଶ୍ର**

ମୁଖ୍ୟ ଅଧ୍ୟାପକ : ସ୍ନାତକୋତ୍ତର ଓଡ଼ିଆ ବିଭାଗ

ସମ୍ବଲପୁର ବିଶ୍ୱବିଦ୍ୟାଳୟ

ପ୍ରକାଶକ



ଧର୍ମଗ୍ରନ୍ଥ ଷ୍ଟୋର

ପ୍ରକାଶକ :

ଶ୍ରୀ ଅନନ୍ତ ମିଶ୍ର

କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର : କଟକ-୨

ପରିବର୍ତ୍ତିତ ନୂତନ ସଂସ୍କରଣ

ଜୁଲାଇ : ୧୯୭୪

ମୁଦ୍ରାକର :

ଶ୍ରୀ ରଘୁନାଥ ପ୍ରସାଦ ମିଶ୍ର

ପ୍ରସାଦ ପ୍ରେସ : କଟକ-୨

ମୂଲ୍ୟ : ଟ ୭-୫୦ ପଇସା

# *Juge Juge Odiya Kavita*

**(Oriya Poetry Anthology)**

*Edited by*

Dr. GOPAL CHANDRA MISHRA

Professor of Oriya, Sambalpur University

Publisher

**Sri Anant Misra**

Cuttack Students' Store

Cuttack-2

Revised New Fdition

July 1974

Printer

Prasad Press : Cuttack-2

Price

Rs. 7.50

# ସୂଚୀ

## ପୁରାତନ ଯୁଗ

## ଆଧୁନିକ ଯୁଗ

———

# ଆଦ୍ୟଭାଷା

ଉତ୍କଳ କଳାତୀର୍ଥ । ରୂପରସ ଛନ୍ଦର ଗଭୀର ତାତ୍ତ୍ୱିକ ଅନୁଶୀଳନ ଏ ଜାତିର ପ୍ରାଣସର୍ବସ୍ୱ ତଥା ସ୍ମରଣୀୟ ସଂସ୍କୃତିର ବାର୍ତ୍ତାବହ । ଯେଉଁ ଦେଶର କଳା, ସ୍ଥାପତ୍ୟ ଏବଂ ଶିଳ୍ପ ଚାତୁର୍ଯ୍ୟର ବିଳାସରେ ପ୍ରସ୍ତରମୟ କୋଣାର୍କ ପ୍ରାଣବନ୍ତ ଅନୁଷ୍ଠାନର ପ୍ରତୀକ, ସେହି ଦେଶର ପ୍ରାଚୀନ ସାହିତ୍ୟିକ ପ୍ରବୃତ୍ତିର ବିଶେଷତ୍ୱ ହେଉଛି ତାର ଅଫୁରନ୍ତ କାବ୍ୟସମ୍ଭାର । ଓଡ଼ିଶାର ସାହିତ୍ୟ, ସଂସ୍କୃତି ତଥା ସଭ୍ୟତାରେ ଏକ ସୃଷ୍ଟିକାମୀ ଜାତିର ଅବିଚ୍ଛିନ୍ନ ପ୍ରତିଭାର ଦିବ୍ୟସ୍ପର୍ଶ ପ୍ରତି ଯୁଗରେ ସଂଜୀବିତ । ସେହି ଦିବ୍ୟ ସ୍ପର୍ଶର ଧାରା ଯୁଗେ ଯୁଗେ ମୃତ୍ୟୁଞ୍ଜୟୀ ଏବଂ ଚିରନ୍ତନ ହୋଇଅଛି । ତେଣୁ ଓଡ଼ିଆ ସାହିତ୍ୟରେ କାବ୍ୟ କବିତା କଳାର ଚେତନା ଏକ ସମୃଦ୍ଧ ଶିଳ୍ପସୃଷ୍ଟିର ପରିଚାୟକ । ତା'ର ଆଦ୍ୟାବସ୍ଥାର କର୍ଣ୍ଣଧାର ସାରଳା, ବଳରାମ, ଜଗନ୍ନାଥ, ଦୀନକୃଷ୍ଣ, ଉପେନ୍ଦ୍ରଭଞ୍ଜ, ଅଭିମନ୍ୟୁ ପ୍ରଭୃତି କାବ୍ୟକାରଙ୍କ ଶିଳ୍ପ ସୃଷ୍ଟିରେ ଯେପରି ଜାତିର ଆବେଗ ଆକାଂକ୍ଷା ପ୍ରତିଫଳିତ, ଆଧୁନିକ ତଥା ଅତ୍ୟାଧୁନିକ କାଳର ବରେଣ୍ୟ ସାଧକମାନଙ୍କର କୃତିରେ ଛନ୍ଦ ଓ ଭାବର ବୈଚିତ୍ର୍ୟରେ ତାହା ସେପରି ପଲ୍ଲବିତ ଏବଂ ପୁଷ୍ପିତ ।

ଓଡ଼ିଆ ସାହିତ୍ୟର କାବ୍ୟ କବିତା ଚେତନା ଏକ ଅବିଚ୍ଛିନ୍ନ ଧାରାର ଉଜ୍ଜ୍ୱଳ ପଦାଙ୍କ ମାତ୍ର । ଏହି ବିଚାରରେ ପ୍ରତ୍ୟେକ ଯୁଗର ପ୍ରତିନିଧିମୂଳକ ଶିଳ୍ପସୃଷ୍ଟି ପ୍ରତି ଧ୍ୟାନ ଦିଆଯାଇ ଏହି ସଙ୍କଳନଟି ପ୍ରସ୍ତୁତ କରାଯାଇଛି ।

ଓଡ଼ିଆ କାବ୍ୟ କବିତାର ପ୍ରସନ୍ନ ମାନସ ଏହି ସଙ୍କଳନର ଅନ୍ତର୍ଭୁକ୍ତ କାବ୍ୟ କବିତା କୃତିରେ ପ୍ରତିବିମ୍ବିତ କରାଇବା ହେଉଛି ଏହାର ପ୍ରଧାନ ଉଦ୍ଦେଶ୍ୟ । ଭାବ ଓ ଆଙ୍ଗିକର ବୈଷମ୍ୟରେ ମଧ୍ୟ ଓଡ଼ିଆ କବିତା ଐକ୍ୟ, ସାମ୍ୟ ଓ ସଂହତିର ମୁଦ୍ରାଙ୍କ ବହନ କରିଅଛି । ଆଧୁନିକ ଓଡ଼ିଆ କବିତାରେ ମଧ୍ୟ ରସ ତଥା ରୁଚିର ପ୍ରକାଶ କିପରି ଅପ୍ରତିହତ, ଆଧୁନିକ ସଂଘର୍ଷ ସମ୍ମୁଖୀନ ମାନବସମାଜର ଅନୁଭୂତି ତଥା ଅଭିଜ୍ଞତା କିପରି ତନ୍ତ୍ରୀରେ ଚର୍ଚ୍ଚିତ, ଏବକାଳର ପୀଡ଼ିତ ନରନାରୀଙ୍କର ସ୍ୱର

କବିତା ଶିଳ୍ପଟିର କିପରି ଝଂକୃତ, ତାହା ଏହି କ୍ଷୁଦ୍ର ସଙ୍କଳନଟିରେ ପ୍ରଦର୍ଶିତ ହୋଇଅଛି । ମାତ୍ର ବନ୍ଧୁ ବରେଣ୍ୟଶିଳ୍ପୀଙ୍କୁ ଏହି ସଙ୍କଳନରେ ଗ୍ରହଣ କରି ନ ପାରି ମୁଁ ବିଶେଷ ଦୁଃଖିତ ।

ପରିଶେଷରେ, ଯେଉଁ ସୁହୃଦ ବରେଣ୍ୟ ସ୍ରଷ୍ଟାଗଣ ଏହି ସଙ୍କଳନଟି ପୂର୍ଣ୍ଣାଙ୍ଗ କରିବାରେ ମୋତେ ସାହାଯ୍ୟ କରିଛନ୍ତି ଏବଂ ନିଜ ନିଜର କବିତା ଅନ୍ତର୍ଭୁକ୍ତ କରିବା ପାଇଁ ସାଗ୍ରହ ଅନୁମତି ପ୍ରଦାନ କରିଛନ୍ତି, ସେମାନଙ୍କ ନିକଟରେ ସଙ୍କଳୟିତା କୃତଜ୍ଞ । ସଙ୍କଳନଟି ସୁଧୀସମାଜଦ୍ୱାରା ଆଦୃତ ହେଲେ ଶ୍ରମ ସାର୍ଥକ ହେଲା ବୋଲି ମନେ କରିବି ।

ତା ୨୦ । ୭ । ୧୯୭୪ } ଗୋପାଳଚନ୍ଦ୍ର ମିଶ୍ର

# କେଶବ କୋଇଲି

## ମାର୍କଣ୍ଡ ଦାଶ

---

କୋଇଲି ! କେଶବ ଯେ ମଥୁରାକୁ ଗଲା,
କାହ୍ନାବୋଲେ ଗଲା ପୁଣ ବାହୁଡ଼ି ନଇଲା, ଲୋ କୋଇଲି ।
କୋଇଲି ! ଖଣ୍ଡ କ୍ଷୀର ଦେବି ମୁଁ କାହାକୁ,
ଖାଇବାର ପୁଣ ଗଲା ମଥୁରାପୁରକୁ, ଲୋ କୋଇଲି ।
କୋଇଲି ! ଗଲା ପୁଣ ବାହୁଡ଼ି ନଇଲା,
ଗହନ ତ ବୃନ୍ଦାବନ ଶୋଭା ନ ପାଇଲା, ଲୋ କୋଇଲି ।
କୋଇଲି ! ଘର ମୋର ନ ମଣନ୍ତି ନନ୍ଦ,
ଘଟଣ ନ ଢଣେ ପୁର ନ ଥିଲେ ଗୋବିନ୍ଦ, ଲୋ କୋଇଲି ।
କୋଇଲି ! ନନ୍ଦ ଦେହ୍ନ ପଷାଣେ ଗଢ଼ିଲା,
ନୟନେ କଜ୍ଜ୍ୱଳ ଦେଇ ରଥେ ବସାଇଲା, ଲୋ କୋଇଲି ।
କୋଇଲି ଚଳୁଥାଇ କଟିସ୍ଥ ମେଖଳୀ,
ଚକିତ ହୋଇଲେ ଶୁଣି ଗୋପପୁର ବାଳୀ, ଲୋ କୋଇଲି ।
କୋଇଲି ! ଛୁଟେକ ମୁଁ ମାଇଲି ପୂରୁବେ,
ଛାଡ଼ିଗଲେ କୃଷ୍ଣ ଅବା ସେହୁ ପରାଭବେ, ଲୋ କୋଇଲି ।
କୋଇଲି ! ଦୃଢପଣେ ଅଇଲା ଅକ୍ରୂର,
ଯାହା ବୋଲି ଭଣ୍ଡି ନେଲା ବସାଇ ରଥର, ଲୋ କୋଇଲି ।
କୋଇଲି ! ଝୁରୁଝୁରୁ ଲୁହ ନ ରହିଲା,
ଝଗଡ଼ା ସାରଣ କୃଷ୍ଣ ମଥୁରା ରହିଲା, ଲୋ କୋଇଲି ।
କୋଇଲି ! ଞଣାକାଳେ ହର ମାଗେ ଗ୍ରନ୍ଦ,
ନୟନ ଟେକଣ ତାଙ୍କୁ ରହୁଥାନ୍ତି ନନ୍ଦ, ଲୋ କୋଇଲି ।
କୋଇଲି ! ଟହ ଟହ ହସୁଥାନ୍ତି କୋଳେ,
ଟଳଟଳ ହେଉଥାନ୍ତି ଝୁଲିବାର ବେଳେ, ଲୋ କୋଇଲି ।
କୋଇଲି ! ଠଣ ଯେ ସୁନ୍ଦର ବେଜ ପୋଏ,
ଠକ ଭଣ୍ଡିଗଲେ କୃଷ୍ଣ ନଇଲେ ଭେଡ଼ାଏ, ଲୋ କୋଇଲି ।

କୋଇଲି ! ଡାକଲେ ଖ୍ପଇ ଯେତ୍ନେ ଶାଖି,
ଡାଳବନ୍ତୁ ଶୁଆ ପ୍ରାଣେ ଖନ୍ତୁଥାନ୍ତି ହରି, ଲୋ କୋଇଲି ।
କୋଇଲି ! ଡଲୁଛନ୍ତି ମାଏ ଯଶୋବନ୍ତୀ,
ଡାଳେ ହରାଇଲି ମୋର ପୁଅ ଶିଶୁପତି, ଲୋ କୋଇଲି ।
କୋଇଲି ! ଅନେକ ହିଂସିଲା ରୟେ କଂସ,
ଅଣହେଲା କରଣ ଆପଣେ ଗଲା ନାଶ, ଲୋ କୋଇଲି ।
କୋଇଲି ! ତନୁରେ ତା ଲେପଇ କୁଙ୍କୁମ,
ତନହେ ଖେଳାଉଥାନ୍ତି ଭାଇ ବଳରାମ, ଲୋ କୋଇଲି ।
କୋଇଲି ! ଅନ ଖାଇଁ କ୍ଷୀର ପିଆଇଲି,
ଅବର କାଳକୁ ପୁଅ ଦେଖି ନ ପାରିଲି, ଲୋ କୋଇଲି ।
କୋଇଲି ! ଦଉଡ଼ିରେ ବାନ୍ଧିଲି ପୁଅକୁ,
ଦାମୋଦର ରାଗେ ଗଲେ ମଥୁରାପୁରକୁ, ଲୋ କୋଇଲି ।
କୋଇଲି ! ଧନ୍ୟ ସେହୁ ଦଇବକୀ ନାରୀ,
ଧର୍ମ ଥିଲା ପୁଅ ଗୋଟି ଖୋଇଲା ତାହାର, ଲୋ କୋଇଲି ।
କୋଇଲି ! ନ ଶୋଭଇ ଗୋପପୁର ମୋର,
ନାରାୟଣ ଗଲାବନୁ ମଥୁରା ନଗର, ଲୋ କୋଇଲି ।
କୋଇଲି ! ପରବସ ପୁରୁଷ ମୋ ମାଧୋଇ,
ପରବସ ମୁଁ ହୋଇଥିଲି କୃଷ୍ଣମୁଖ ଚାହିଁ, ଲୋ କୋଇଲି ।
କୋଇଲି ! ଫଳିବାକୁ ନାହିଁ ମୋର ଆଶ,
ଫଳଦାର ପୁଅ ଗଲା ବସୁଦେବ ପାଶ, ଲୋ କୋଇଲି ।
କୋଇଲି ! ବହୁତ ସହିଲି ତାଙ୍କ ଅଳି,
ବଢ଼ାଇ ଶରଧା ଭାଙ୍ଗିଗଲେ ବନମାଳୀ, ଲୋ କୋଇଲି ।
କୋଇଲି ! ଭଣ୍ଡି ମୋତେ ଗଲେ ବେଣୁ ପୋଏ,
ଭାଇ ତାଙ୍କ ବଳରାମ ନଇଲେ ଭେଡ଼ାଏ, ଲୋ କୋଇଲି ।
କୋଇଲି ! ମଥୁରାକୁ ଯିବ କି ମୁଁ ଧାଇଁ;
ମାଧବ ମଧୁସୂଦନ ଆଣିବ ବଢ଼ାଇ, ଲୋ କୋଇଲି ।
କୋଇଲି ! ଯିବେ ଯେ ଆସିବେ ବୋଲି ଗଲେ,
ଜଗତ ଜୀବନ ପ୍ରଭୁ ଭେଡ଼ାଏ ନଇଲେ, ଲୋ କୋଇଲି ।
କୋଇଲି ! ରତ୍ନ ବସ୍ତ୍ର ଅଳଙ୍କାରମାନ,
ରାମକୃଷ୍ଣ-ଶ୍ରୀଅଙ୍ଗକୁ ଦଶେ ଶୋଭାବନ, ଲୋ କୋଇଲି ।
କୋଇଲି ! ଲକ୍ଷ୍ମୀବନ୍ତ ଅଟେ ନାରାୟଣ,
ଲଳାଟରେ ନାମ ଦେଲେ ସେ ଗର୍ଗ ବ୍ରାହ୍ମଣ, ଲୋ କୋଇଲି ।

କୋଇଲି ! ବୃନ୍ଦାବନ ନ ଶୋଭଇ ମୋର,
ବସ୍ତ୍ରା କଏ ଚୋରାଇବ ଯମୁନାର ତୀର, ଲୋ କୋଇଲି ।
କୋଇଲି ! ଶ୍ରୀମନ୍ତ ପୁରୁଷ ମୋ ମାଧୋଇ,
ଶିଖିରଙ୍ଗ ଗଲ୍ଧଦଲୁ ନନ୍ଦ ହେଲେ ବାଇ, ଲୋ କୋଇଲି ।
କୋଇଲି ! ଶଶୀ ଯେହ୍ନେ ଦିନୁ ଦିନୁ କ୍ଷୀଣ,
ସେହ୍ନମତ କ୍ଷୀଣ ହେଲେ ମୋ ନନ୍ଦ ରାଜନ, ଲୋ କୋଇଲି ।
କୋଇଲି ! ସାତଦିନ ଇନ୍ଦ୍ର ବୃଷ୍ଟି କଲା,
ସପତ ବରଷ ପୁଅ ମନ୍ଦର ଧଇଲା, ଲୋ କୋଇଲି ।
କୋଇଲି ! ଧାଇ ଯେ ମାରଇ ପୁଅ ତୁଣ୍ଡ,
ହୃଦୟେ ଦିଶିଲା ତାର ସପତ ବ୍ରହ୍ମାଣ୍ଡ, ଲୋ କୋଇଲି ।
କୋଇଲି ! ଛନ୍ଦଣି ବନ୍ଧଣି ଭୁଜଦଣ୍ଡ !
କ୍ଷମାକର ଦୋଷ ମୋର ଭଣେ ମାରକଣ୍ଡ, ଲୋ କୋଇଲି ।

---

# ବାରମାସୀ କୋଇଲି

## ଶଙ୍କର ଦାସ

ଆରେ ବାବୁ ରୂପଧାରୀ ! କି ଦଣ୍ଡ ହେଲା ତୋହର ।
କାନ୍ଦ କଉଶଲ୍ୟା ବୋଲନ୍ତି କୈକେୟୀ ଅରଜିବ କେଉଁ ଶିରୀ ଲୋ ।
କୋଇଲି ଶୁଣ ଲୋ ।

ଏହି ମଗୁଶିର ମାସ, କାକର ପଡ଼େ ବିଶେଷ ।
ଶୀତଳ ପବନ ବହେ ଘନ ଘନ ମୋ ପୁଅ କରିବ କିସ ଲୋ ।
କୋଇଲି ଶୁଣ ଲୋ ॥

ପୁଷମାସେ ବଡ଼ ଶୀତ । କଷ୍ଟ ହଏ ଅପ୍ରମିତ ।
ବିନା ବସନରେ ବୃକ୍ଷ ବକଳରେ କି ଦୁଃଖ ନ ହେବ ଜାତ ଲୋ ।
କୋଇଲି ଶୁଣ ଲୋ ॥

ମାଘରେ ତହୁ ଅଧିକ । ଶରବ ଦୁଃଖଦାୟକ ।
ଅମୂଲ୍ୟ ସୁପାଟ ତେଜି ରଘୁପତି ବୁଲଇ କାନନଯାକ ଲୋ ।
କୋଇଲି ଶୁଣ ଲୋ ॥

ଫଗୁଣେ ଫଗୁ ଖେଳରେ । ମାତନ୍ତି ଘରେ ଘରେ ।
ମୋ ଅଧୁଣୀଧନ ମୋଠୁ ହୋଇ ଭିନ୍ନ ଭସାଇଲା ଶୋକନୀରେ ଲୋ ।
କୋଇଲି ଶୁଣ ଲୋ ॥

ଚଇତ୍ର ମାସର ଖରା । ନୀରସ କରଇ ଧରା ।
ଶରୀରରୁ ଝାଳ ବହେ ଅନର୍ଗଳ ପରାଣ ହୋଏ ଘାବରା ଲୋ ।
କୋଇଲି ଶୁଣ ଲୋ ॥

ବଇଶାଖ ଖରା ରୁହିଁ । ବାହାରକୁ ନୋହେ ଯାଇ ।
କେଉଁ ବୃକ୍ଷମୂଳେ ଜୀବନ ବିକଳେ ଥିବ ମୋର ପୁଅ ରହି ଲୋ ।
କୋଇଲି ଶୁଣ ଲୋ ॥

ଜ୍ୟେଷ୍ଠେ ମୋ ଜ୍ୟେଷ୍ଠ ନନ୍ଦନ ! ଜାନକୀ ସଙ୍ଗେ ଲକ୍ଷ୍ମଣ ।
ନାନା ପକ୍ୱଫଳ ଖୋଜି ବୁଲୁଥିବେ ବିଧିର ଏ ବିଡ଼ମ୍ବନ ଲୋ ।
କୋଇଲି ଶୁଣ ଲୋ ॥

ଆଷାଢ ମାସରେ ମେଘ । ଗରଜଇ ଯେହ୍ନେ ବାଘ ।
ବେଳେ ବେଳେ ଦଶ ହୁଅଇ ଅଦୃଶ୍ୟ ଘୋଟିଯାଏ ଚଉଦିଗ ଲୋ ।
କୋଇଲି ଶୁଣ ଲୋ ॥

ଦେଖ ଧାର ଶ୍ରାବଣ । ଜଳ ପଡ଼େ ଅନୁକ୍ଷଣ ।
ଘର ଘାଟ ନାହିଁ ମୋ ଦୁଃଖିଙ୍କ ଖାଳି କ ରୂପେ କାଟିବ ଦିନ ଲୋ ।
କୋଇଲି ଶୁଣ ଲୋ ॥

ଭାଦ୍ରବ ହେଲେ ପ୍ରବେଶ । ସୁନିର୍ମଳ ଦଶଦିଶ ।
ଅତି ସୁକୁମାରୀ ଜନକ କୁମାରୀ ମନେ ଭାଜୁଥିବ କସ ଲୋ ।
କୋଇଲି ଶୁଣ ଲୋ ॥

ଆଶ୍ୱିନେ ଚନ୍ଦ୍ର କିରଣ । କରଇ ମନ ହରଣ ।
କେତେମତେ କେତେ ଉତ୍ସବ କରନ୍ତେ ଘରେ ଥିଲେ ରଘୁରାଣ ଲୋ ।
କୋଇଲି ଶୁଣ ଲୋ ॥

ଏ ମନ୍ଦା କାର୍ତ୍ତିକ ମାସ । ଭଣିଲେ ଶଙ୍କର ଦାସ ।
ସୀତା ସଙ୍ଗେ ଘେନି ରଘୁକୁଳମଣି ଭୋଗକରେ ବାରମାସ ଲୋ ।
କୋଇଲି ଶୁଣ ଲୋ ॥

---

# ଯୁଧିଷ୍ଠିରଙ୍କ ପ୍ରତି ଭୀଷ୍ମଙ୍କର ଉପଦେଶ

## ସାରଳା ଦାସ

ବୈବସ୍ୱତ ମନୁ ଆଗେ ବଦନ୍ତି ଅଗସ୍ତି ।
କୃଷ୍ଣ ସଙ୍ଗେ ଗଲେ ପାଣ୍ଡବ ପାଞ୍ଚମୂର୍ତ୍ତି ॥
ଏଥୁ ଅନନ୍ତରେ ଯେ ବୋଇଲେ ଜନାର୍ଦ୍ଦନ ।
ଅଭିଷେକ ବିଧିମାନ କର ଆୟୋଜନ ॥
ଶୁଣି ଯୁଧିଷ୍ଠିର ବୋଇଲେ ହେ ଦେବ ହରି ।
ଭୀଷ୍ମଙ୍କୁ କହିଲେ ସିନା ରାଜା ହୋଇପାରି ॥
ଚିହ୍ନି ଭୀଷ୍ମଙ୍କ ପାଖକୁ କଲେ ଯେ ଗମନ ।
ସୈନ୍ୟ ସଖା ନାହିଁ କେହି ସେହି ଷଡ଼ ଜଣ ॥
ଯହିଁ ଭୀଷ୍ମ ଦେବ କରିଥିଲେ ଶରଶଯ୍ୟା ।
ସେଠାରେ ପ୍ରବେଶ ଯାଇଁ ହେଲେ ଧର୍ମରାଜା ॥
ଭୀଷ୍ମ ଆଗରୁ ଆଚରି ଥିଲେ ମୌନ ବ୍ରତ ।
ଯୁଧିଷ୍ଠିରଙ୍କି ଦେଖି ପୁଣି ଫିଟାଇଲେ ନେତ୍ର ॥
ଭୀଷ୍ମଦେବ କହିଲେ ଯେ ଯୁଧିଷ୍ଠିର ରହି ।
ସୁଖେ ନିଷ୍କଣ୍ଟକ ରାଜ୍ୟ କର ବାବୁ ଯାଇଁ ॥
କିପାଇଁ ହୋ ଧର୍ମରାଜା ଅଇଲୁ ମୋ ପାଶ ।
ବଦନ୍ତି ଯୁଧିଷ୍ଠି ଶୁଣ କୁରୁକୁଳ ଈଶ ॥
ଆମ୍ଭ ହିତେ ଦେବ ତୁମ୍ଭେ ତେଜିଲ ଜୀବନ ।
ତ୍ରିଭୁବନେ କିଏ ଅଛି ତୁମ୍ଭଙ୍କ ସମାନ ॥
ଯୁଗ ଥିବେ ତୁମ୍ଭଙ୍କୁ ଜାଣନ୍ତି ଅବା କିଏ ।
ଆମ୍ଭଙ୍କୁ ତୁମ୍ଭର ସଦା ଚଢ଼େ ଦୟା ଥାଏ ।
ପ୍ରଥମ ଯୁଦ୍ଧ ଯେ ଆଜ୍ଞା ଦେଇଥିଲ ଦେବ ।
ଶତ୍ରୁ ମାରି ପଞ୍ଚକଟକରେ ରାଜା ହେବ ॥
ମହତ୍ତ ବଚନ କେବେ ନୁହଇ ଅନ୍ୟଥା ।
ହସିଲେ ଯେ ଭୀଷ୍ମ ଶୁଣି ଯୁଧିଷ୍ଠିର କଥା ॥
ହସିତ ହୋଇ ଭୀଷ୍ମ ଦିଅନ୍ତି ଉତ୍ତର ।
ଏବେ ନିଷ୍କଣ୍ଟକ ହେଲା ସୁଖେ ରାଜ୍ୟ କର ॥
ନାନା ଉପଭୋଗ କର ସୁଖେ ରାଜା ହୋଇ ।
ଶ୍ରୀକୃଷ୍ଣ ପ୍ରସନ୍ନେ ତୋତେ କିଛି ଭୟ ନାହିଁ ॥

ନପାତ ହୋଇଲେ ଏବେ ଧୃତରାଷ୍ଟ୍ର ପୁତେ ।
ଏହା ହେବ ବୋଲି ସନ୍ଦେହ ନ ଥିଲା ମୋ ଚିତ୍ତେ ॥
ଧର୍ମ ପ୍ରତିପାଳି ସୁଖେ ରାଜ୍ୟ କର ଯାଇଁ ।
ଅଧର୍ମ କଲେକି ସହ୍ୟ ନ ପାରଇ ମହୀ ॥
ଏପରି ପ୍ରଜା ପାଳିବୁ ନୋହିବ କେ ଦୁଃଖୀ ।
ପ୍ରଜା ରକ୍ଷା କଲେ ସେ ରାଜା ଅଟେ ସୁଖୀ ॥
ରାଜ୍ୟ ପ୍ରତିପାଳନେ ବିନା ଇନ୍ଦ୍ର କରେ ବୃଷ୍ଟି ।
ରାଜାଙ୍କ ପାଳନେ ବିନା ରକ୍ଷା ହୁଏ ସୃଷ୍ଟି ।
ପ୍ରଜାଙ୍କୁ ପାଳିବା ଅଟେ ରାଜାର ଯେ ବିଧି ।
ପ୍ରଜା-ସୁଖେ ଥିଲେ ସେ ରାଜାର ସର୍ବସିଦ୍ଧି ॥
ଦୋଷାଦୋଷ ବିଚାର କରିଣ ଦଣ୍ଡ ଦେବୁ ।
ଦେଖି ତାହା ସୁଖୀ ହେବେ ପ୍ରଜାମାନେ ସବୁ ॥
ଚାର ବରଗି ଦେଖିବୁ ବିଧି କି ଅବିଧି ।
ଯେ କରେ ସଦା ଅବିଧି ପକାଇବୁ ଛେଦି ॥
ଦୋଷୀକୁ ଦଣ୍ଡିଲେ ତୋତେ ନ ଲାଗିବ ଦୋଷ
ତେବେ ଲକ୍ଷ୍ମୀ ନିଷ୍ଟଳେ ରହିବେ ତୋର ଦେଶ ॥
କୋଡ଼ିଏ ହାତରେ ଯେ କରିବୁ ଏକ କାଠି ।
ପଚଶ ମୁଣ୍ଡରେ ମାଣେ, ବଂଶ ମାଣେ ବାଟି ॥
ବାଟିକର ଚନାଏ ଯେ ଘେନିଥିଲେ ସଞ୍ଜା ।
ଅମ୍ଭ ଆମ୍ଭୁ ଘେନି ବଞ୍ଚ ବୋଲିବେ ଯେ ପ୍ରଜା ॥
ପ୍ରଜା ସୁଖେ ଶୁଭେ ଯା'ର ଜୟ ଜୟଧ୍ୱନି ।
ଯମ ତାକୁ ଦଣ୍ଡି ନ ପାରଇ ପାଶ ଘେନି ॥
ରାଜ୍ୟ କଲି ନବାରଣେ ଖୁଇଙ୍କି ପେଷିବୁ ।
ରାଜ୍ୟର ଖବର ତନ୍ନବାର ବୁଝୁଥିବୁ ॥
ଉତ୍ତମ ଲୋକ ଦେଖିଣ ମନ୍ତ୍ରୀ ଯେ କରିବୁ ।
କିନ୍ତୁ ତା'ର ହାତେ ଦଣ୍ଡବିଧି ଯେ ନ ଦେବୁ ।
କୃଷିକାରକ ଯେ ଧନଦ୍ୱାରା ନ ଦଣ୍ଡିବୁ ।
ନିର୍ଦ୍ଦୋଷୀ ଦେଖିଲେ ତାକୁ କ୍ଷମା ଯେ କରିବୁ ॥
ଶ୍ରେଷ୍ଠ ଘୋଡ଼ା ଦେବୁ ବୃଦ୍ଧ ରାଉତର ହାତେ ।
ପଚିଶ ବର୍ଷ ପଦାତି କରିଥିବୁ ନିତ୍ୟେ ॥
ସତର ବରଷର ହୋଇଥିବ ଯେ ଗଜ ।
ବଳିଷ୍ଠ ମାହୁନ୍ତ ତାକୁ କରୁଥିବ ସଜ ॥

ଅଶ୍ୱ ଗଜ ପଦାତି ନିରନ୍ତେ ସାଜିଥିବୁ ।
ବେଳା ଅନୁସାରେ ଅବକାଶ ଯେ କରିବୁ ॥
ବ୍ରାହ୍ମଣ ମୁଖରୁ ଯେ ପୁରାଣ ଶୁଣୁଥିବୁ ।
ନାରୀମାନଙ୍କୁ କଦାଚ ବିଶ୍ୱାସ ନ ଯିବୁ ॥
ଅସୁର-ଭୋଗ-ତୀର୍ଥରେ ସ୍ନାନ ନ କରିବୁ ।
ଧନ ସଞ୍ଚିବାକୁ ସଦା ଲୋଭୀ ଯେ ନୋହିବୁ ॥
ବେଳ କାଳ ଜାଣି ଧନ ପ୍ରଜାଙ୍କୁ ଯେ ଦେବୁ ।
ଅନ୍ଧାରି ବିଜେ ନ କରି ବିଶ୍ୱାସ ନ ଯିବୁ ॥
ପ୍ରାଣଧିକ ବରିବର ନ ତେଜିବୁ ରାଜା ।
ଦେବ ବ୍ରାହ୍ମଣଙ୍କୁ ନିତି କରୁଥିବୁ ପୂଜା ॥
ଧାର୍ମିକଙ୍କୁ କରାଇବୁ ବ୍ରତ ଏକାଦଶୀ ।
ବିଦେଶୀ ଦୂତଙ୍କୁ ନଗ୍ରେ ନ ଦେବୁ ଯେ ପଶି ॥
ପର ଦାରା ପର ଧନେ ଲୋଭୀ ଯେ ନୋହିବୁ ।
ବିବାହିତ ନାରୀ ସଙ୍ଗ କେବଳ କରିବୁ ॥
ଯଥା ଯଜ୍ଞ କରି ଦେଉଥିବୁ ଯେ ଆହୁତି ।
ଦଣ୍ଡ ବିହିବୁ ଯେ ଉପଗତ ଶତ୍ରୁ ପ୍ରତି ॥
ଦୁଷ୍ଟ ଦାନବ ଦେଖିଲେ କରିବୁ ବିନାଶ ।
ତହିଁରେ ରାଜାକୁ ଲେଶମାତ୍ର ନାହିଁ ଦୋଷ ॥
ପରଦାରା ଧନ ନ କରିବୁଟି ହରଣ ।
ରଖିବୁ ଯେ ବିକଳରେ ପଶିବ ଶରଣ ॥
ବିଶ୍ୱାସୀ ମନ୍ତ୍ରୀକି ରାଜ୍ୟଭାର ସମର୍ପିବୁ ।
ସମୁଦାୟ ଅଧିକାର କେବେହେଁ ନ ଦେବୁ ॥
କଷ୍ଟ ଯେପରି ନ ପା’ନ୍ତି ଗୋରୁ ଯେ ବ୍ରାହ୍ମଣେ ।
ଏ କଥାକୁ ସଦା ରଖିଥିବୁ ସାବଧାନେ ॥
ତୀର୍ଥ ଅନ୍ନଛତ୍ର ଦେଉଥିବୁ ହେ ନୃପତି ।
ସ୍ଥାନ ଅନୁରୂପେ ରଖିଥିବୁ ସେନାପତି ॥
ଗଜ ଅଶ୍ୱ ନିମନ୍ତେ ଯେ ଦେଉଥିବୁ ଧନ ।
ଗୋଚର କରି ବହୁତ ଛାଡ଼ି ଦେବୁ ସ୍ଥାନ ॥
ଗୁଣ ଜାଣି ଲୋକଙ୍କୁ ଯେ କରୁଥିବୁ ପୂଜା ।
କବିଙ୍କଠାରେ କୃପଣ ନୋହିବୁ ହେ ରାଜା ॥
ଏ ବିଧିରେ କହି ଧର୍ମରାଜ-ବିଧିମାନ ।
ଶ୍ରୀ କୃଷ୍ଣଙ୍କ ମୁଖରୁ ଗ୍ରହିଲେ ବଚନ ॥

# ଉଷା ଓ ଅନିରୁଦ୍ଧଙ୍କର ଦ୍ୱାରାବତୀ ଗମନ

## ଶିଶୁ ଶଙ୍କର ଦାସ

---

ଦିଶ-ଚିନ୍ତା ଭୈରବ

ଗରୁଡ଼ ପିଠିରେ ବିଜେ ଦେବ ନାରାୟଣ
ଶଙ୍ଖ ଚକ୍ର ଗଦା ପଦ୍ମ ଶାରଙ୍ଗ କରରେଣ ।
ରଥ ଗଜ ଅଶ୍ୱ ନର ଚତୁରଙ୍ଗ ବଳ
ଅଢ଼ ସମ୍ଭାରେ ବିଜେ ଯେ ଅଖିଳ ମଙ୍ଗଳ ।
ସ୍ଥିର ପାରୁଶରେ ବେଢ଼ିଛନ୍ତି ଯଦୁବୀରେ
ନ ଗଚ୍ଛି ଉପମା ଦେବା ସ୍ନେହ ମନେ ସ୍ଫୁରେ ।୧।

ଡମ୍ବରୁ ନିଶାଣ ଭେରୀ ମୃଦଙ୍ଗ କାହାଳ
ବେଣୁ ବୀଣା ଶଙ୍ଖ ମିଶି ଶୁଭଇ ଚହଳ ।
ଜଳଧି ମନ୍ଥନେ ଯେହ୍ନେ ଶୁଭେ ସିନ୍ଧୁ ଘୋଷ
ପାଞ୍ଚଜନ୍ୟ ଶଙ୍ଖ ଶବ୍ଦେ ସ୍ଫୁରେ ଦଶଦିଶ ।
ମଙ୍ଗଳ ପଢ଼ନ୍ତି ତହିଁ ବ୍ରାହ୍ମଣ ଅପାର
ନଟ ଭାଟମାନେ ତ କରନ୍ତି ଜୟେବାର ।୨।

ଶ୍ୱେତଛତ୍ର ଉହାଡ଼ିଲା ଦିନକର ଜ୍ୟୋତି
କ୍ଷୀର ଜଳନିଧି କି ଲଂଘିଲା ବସୁମତୀ ।
ଚକୋର ହରଷ ହୋଇ୍ୟେ ବିକାଶେ କୁମୁଦ
ପାଦରେଣୁ ଶାନ୍ତ ହେଲା ପଡ଼ି ଗଜ ମଦ ।
ବନଗିରି ନଦୀ ସବୁ ହୋଇଲାକ ସମ
ଶୋଣିତ-ପଦ୍ମବନେ ଉଦୟେ କିବା ସୋମ ।୩।

ଚତୁରଙ୍ଗ ବଳ ଘେନି ଯୁଦ୍ଧଇ ଅସୁର
ଶିବଗଣ ଘେନିଣ ଶଙ୍କର ଆଗଭର ।
ରାମକୃଷ୍ଣ ସାହାପାଇ ଯଦୁବୀରମାନେ
ରଣେ ବାଣ ବଳ ପେଷି କୃତାନ୍ତ ସଦନେ ।

ହରିହର ବେନି କଲେ ସମର ଯେ ଘୋର
ଛିନପୁର ଭସ୍ମେ କର୍ମେ, ଦେଖନ୍ତି ଅମର ।୪।

ପିତାମହ ଶାନ୍ତକରି ବୁଝାଇଲେ ଶିବ
ଜଗନ୍ନାଥ ହଙ୍ଗେ ବାଣା ମୂର୍ଖ ଅସମ୍ଭବ ।
ଚତଦେଣ ପ୍ରାଣାନ୍ତେ ତା ରଖିଲେ ଭବାନୀ
ବେଳେ ବାହୁବଳ ଛେଦି ବୁଝାଇଲେ ବେନି ।
ଦୁର୍ଜୟ କଟକ ତାର ଜିଣି ଯଦୁପତି
ବାଣାଙ୍କୁ ଜୀବନ ଦେଲେ ଶଙ୍କର ପିରତି ।୫।

ଅନ୍ତପୁରେ ବିଜେ କଲେ ଅନିରୁଦ୍ଧ ପାଶେ
ନାଗପାଶ ପଳାଇଲେ ଗରୁଡ଼ର ତ୍ରାସେ ।
ବରକନ୍ୟା ଆଣି କୃଷ୍ଣ ବସାଇଲେ କୋଳେ
ଶଙ୍ଖ ବଜାଇ ବାହୁଡ଼େ ପରମ ମଙ୍ଗଳେ ।
ବାଦ୍ୟ ଘନ ଘନ ରବେ ଗଗନ ପୂରିଲା
ଦେଖି ନରପତି ପୁରେ ଚମକ ପଡ଼ିଲା ।୬।

କନକ ଶିଖରେ ଯେହ୍ନେ ନୀଳ ନବଘନ
ଇନ୍ଦ୍ରଧନୁ ନେଲେ କି ତଡ଼ିତ ଶୋଭାଜନ ।
ତେସନ କନକ ସୁନ୍ଦ ଉପରେ ମୁରାରି
କୋଳେ ଅନିରୁଦ୍ଧ ଉଷା ଉପମି ନ ପାରି ।
ସଧୀରେ ସଧୀରେ ଚଳେ ଭୂମିଗତ ବଳ
ଉପରେ ଗଗନପଥ ବିଜେ ଆଦିମୂଳ ।୭।

ଶ୍ୱେତଛତ୍ର ଉନ୍ନମନ୍ତ ଗଜ ବାଜୀ ଅଛି
ତେଣୁ ସେ ସଇନ ଶୋଭି ସିନ୍ଧୁ ପ୍ରାୟେ ଗର୍ଜି ।
ଗରୁଡ଼ ମୁକୁନ୍ଦ ତହିଁ ମନ୍ଦର ପରାୟେ
ଲାବଣ୍ୟ-ଲକ୍ଷ୍ମୀ ଲଭିଲେ ସିନ୍ଧୁ ମନ୍ଥିବା ପ୍ରାୟେ ।
ପୂର୍ବେ ଅମରେ ଲଭିଥିଲେ ଯେତେ ଯେତେ
ଏକରୂପ ଧରି ବାହାର ହୋଇଲେ ତେତେ ।୮।

ତନୁ ଲକ୍ଷ୍ମୀ, ଦନ୍ତମଣି, ଲପନ ଚନ୍ଦ୍ରମା
ଅଧର ପୀୟୂଷ, ଗତି ଗଜରାଜ ବାମା ।

ଦନ୍ତଶ୍ରୀବ ହସ୍ତବର, ଶୋଭି ଦରହାସ
ଭୂଷଣ ପାରିଜାତର, ଦୃଗଞ୍ଚଳ ବାସ ।
ସବୁ ଦେବତାଏ କି ସେ ଏକରୂପ ଧରି
ଅନିରୁଦ୍ଧ ରୂପଲଭି ବାଦ ପରିହରି ।୯।

ଗମନ୍ତେ ଚରଣ ରେଣୁ ଦିଗ ଆଚ୍ଛାଦିଲା
ଦିନକର ଉଦ୍ଧାଡ଼ି କି ଅନ୍ଧାର ଘୋଟିଲା ।
ନିର୍ମଳ ଚନ୍ଦ୍ରମା ଉଷା ବଦନ ଉଜ୍ଜ୍ୱଳେ
ସାନନ୍ଦେଣ ପଥ ବନ୍ଧୁ ଦ୍ୱାରବତୀ ମିଳେ
ଆସନ୍ତି ସୁବତୀ ଏକ ଆରେକକୁ ଘଇ
ଲୁବୁ ଗୌରବ ତେଜନ୍ତି ଉତ୍ସୁକ ବଢ଼ାଇ ।୧୦।

ହାର ଗୁନ୍ଥୁ ଥିଲା କେହୁ ହରାଇଲା ବାଟେ
ବସନ ଅଧେ ଫିଟିଲା ଧାଇଁବା ଉଚାଟେ ।
ବୀଣା ବାଉଥିଲା କେହୁ ସମା ଛିଡ଼ିଗଲା
ବିଭ୍ରମେ କୁଚ ଅଉଁସେ ତୁମ୍ବୀ ମଣିଦାଲା ।
କୁଳବଧୂମାନେ ଜାଲା ଗବାକ୍ଷରେ ଗୃହି
ବହୁ ପ୍ରଶଂସା କରନ୍ତି ଏକ ଯୋଗ ହୋଇ ।୧୧।

ରାଜମାର୍ଗେ ବାର-ବିଳାସିନୀ ଉଭା ହୋଇ
ବାହୁ-ତୋରଣରେ କର-ପଲ୍ଲବ ଲମ୍ବାଇ ।
ଉଚ୍ଚକୁଚ କରନ୍ତି ମଙ୍ଗଳ କଳଶ
କୁସୁମ ବୃଷ୍ଟି ପ୍ରାସ୍ତେକ ମନ୍ଦମନ୍ଦ ହାସ ;
କନକ କଦଳୀ ନିନ୍ଦେ ଜାନୁଯୁଗ ଶୋଭା
ଲୋଚନ-ଶଫରୀ ସର୍ବ ମଙ୍ଗଳର ଶୋଭା । ୧୨ ।

ଚନ୍ଦନ ଦୂର୍ବା ଅକ୍ଷତ ଦଧି ଅର୍ଘ୍ୟ ଘେନି
ବ୍ରାହ୍ମଣ ପଙ୍କାନ୍ତେ ଶୁଭ ହୁଳହୁଳି ଧ୍ୱନି ।
ନଗରେ ବଜାନ୍ତେ କଲେ ଅଖିଳ ମଙ୍ଗଳ
ପୁରବଧୂ ବନ୍ଦାପନ୍ତି ହରପ୍ରିୟା-କୁଳ ।
ରୁକ୍ମିଣୀ ସଙ୍ଗତେ ସତ୍ୟଭାମା ଚମ୍ପୁ ଦେଇ
ପରମାନନ୍ଦ ଉତ୍ସବ ଦ୍ୱାରବତୀ ହୋଇ । ୧୩ ।

ଶୁଭ ଲଗ୍ନ ଯୋଗ ଘେନି ବିଭାକଲେ ବେନି
ଯଥାବିଧି ଉଚିତ ବେଭାର ଦେଲ ଘେନି ;
ଅନାଦି-ନାଥର ଏହୁ ବହୁରୂପ ଲୀଳା
ଲୋକ ରଞ୍ଜା ନିମନ୍ତେ ନାନା ଚରିତ କଲା ।
ବ୍ରହ୍ମାଙ୍କ ଗୋଚର ନୁହେଁ ମହିମା ଯାହାର
ବଚନେ କେ କହିବ ମନକୁ ଅଗୋଚର । ୧୪ ।

ହରର ସେ ଅନୁଗତ ଲୀଳା ରଙ୍ଗ ଯେତେ
ସାହିତ୍ୟ ସଙ୍ଗୀତ ନାନା କଉତୁକ ମତେ ।
ମହାଜଳରାଶି ମତ ପରମାଣ ନାହିଁ
ଯେ ଯେତେ ପଶି ପାରଇ ତେତିକ ଜାଣଇ ।
ତଥାପି ବୁଦ୍ଧିରେ କେହୁ ଦୋଲନ୍ତୁ ଅପାର
ଶାସ୍ତ୍ର ଦୃଷ୍ଟି କି ଅଳପ ଅନୁଭବ ସାର । ୧୫ ।

ରସିକ ସୁଜନ ଜନେ ବୁଝ ଏହୁ ରସ
ଶୁଣିଣ ସଫଳ କର ଉଷା-ଅଭିଳାଷ ।
ନୀଳଗିରି-ନାୟକ କମଳା ଦେବୀ-ପତି
ତାହାର ପଦ୍ମପାଦକୁ ଭଜୁ ମୋର ମତି ।
କହଇ ଶିଶୁଶଙ୍କର ତୁଚ୍ଛ ବୁଦ୍ଧିହୀନ
ଦ୍ୱାଦଶ ଛାନ୍ଦରେ ଉଷା ହୋଇଲା ସମ୍ପୂର୍ଣ୍ଣ । ୧୬ ।

---

( 'ଉଷାଭିଲାଷ'ରୁ ସଂଗୃହୀତ ).

# ରାଧିକା ବିଳାପ

## ଦେବଦୁର୍ଲ୍ଲଭ ଦାସ

ଚରଣେ ଅରୁଣ ରାଜେ,
(ତହିଁ) କନକ ନୂପୁର ସାଜେ,
କଟି କିଙ୍କିଣୀ—ଘଣ୍ଟି ଠଣ ରଣ କଙ୍କଣ ଝଙ୍କ ବାଜେ
(ଗୋ) ସଖି ତୁ ଯାଉଛକନା,
କହ୍ନାଇ ପାଶକୁ ଯାଉଛକନା,
ରତନ ବସନ ହାର କଙ୍କଣ ଯାହା ମାଗୁ ତାହା ନଉଛକନା (୧)

ସଜଳ ଜଳଦ କାନ୍ତି,
ନୀଳମଣି ଜିଣି ଭ୍ରାନ୍ତି,
ଅମଳ କମଳ ମୁଖ ମଣ୍ଡଳ ଅଳକ ଅଳକାପନ୍ତି
ଗୋ ଦୂତି ତୁ ଯାଉଛକନା (୨)

ଅରୁଣ ଅଧର ରାଜେ,
ମୁରଲୀ ମଧୁର ବାଜେ,
ନାସେ ମୋତିବର ଗଗନେ କି ଶୁକ୍ର ଅଧର ପରେ ବିରାଜେ
ଗୋ ସଖି ତୁ ଯାଉଛକନା (୩)

ଭାଲେ ଚନ୍ଦନର ବିନ୍ଦୁ,
(ଗୋ) ନବଢ଼ ଜଳଦେ ଇନ୍ଦୁ,
ମଣ୍ଡିତ କୁଣ୍ଡଳ ଗଣ୍ଡ ମଣ୍ଡଳ ଚଣ୍ଡ କିରଣ ନିନ୍ଦୁ
ଗୋ ଦୂତି ତୁ ଯାଉଛକନା (୪)

କୁଟିଳ କୁନ୍ତଳ ଚୂଳେ,
ରଞ୍ଜିତ ବିବିଧ ଫୁଲେ,
ବାନ୍ଧେଁ ଝଲମଲ ମୟୂର ପୁଚ୍ଛ ମତ୍ତ ମଧୁକର ଭୂଲେ,
ଗୋ ସଖି ତୁ ଯାଉଛକନା (୫)

ମୋତେ ସଜ କର ସଖି,
(ମୁଁ) କହ୍ନାଇ କୁ ସିନା ଦେଖି,
ମୃଦଙ୍ଗ ବଜାଇ ମନ୍ଦ ମନ୍ଦ କରି ଦୂରୁଁ ଠାରୁ ଥାଇଁ ଆସି
ଗୋ ଦୂତୀ ରୁ (୬)

ମୋର ଚରଣେ ଦଅ ପାହୁଡ଼,
(ମୁଁ) ବନେ କରୁଥିବ ଧାଉଡ଼,
ପାଦ ରୁଣ ଝୁଣ ଶବଦ ଶୁଣିବ କହ୍ନାଇ ଆହୁଡ଼ ବାହୁଡ଼
ଗୋ ସଖି ରୁ (୭)

ନେତ ପିନ୍ଧସ୍ଥା ମଣ୍ଡାପଡ଼ସ୍ଥା,
(ମୁଁ) କହ୍ନାଇଙ୍କ ସିବ ଲେଉଡ଼ସ୍ଥା,
ପଙ୍କ୍ତିକରେ ଚୂଡ଼ା ଗୁଞ୍ଜାର ବନ୍ଧ ସମନାଥ ଗଢ଼ଗଡ଼ିଆ
ଗୋ ଦୂତୀ ରୁ (୮)

କୁଶ ଦାମ ପର ବଦ,
(ମୋର) ବାହୁଟି ଉପରେ ବାନ୍ଧ,
ତ୍ରିବଳେଣେ ଭରି ମୋ ଝଲକ ଚନ୍ଦ ଫେରନ୍ତା ମୁକୁତା ବନ୍ଧ
ଗୋ ସଖି ରୁ ଯାଉକନା (୯)

(ମୋର) ମୁକୁତା ପାଞ୍ଚ ଗୋଟିଆ
(ଖଞ୍ଜି ଦେ) ମୋର ନାସା ପୁଟିଆ,
(ମୋର) କହ୍ନାଇ ପାଶକୁ ବାଜି ଯାଉଥିବ ଝମକ ଝମକ ଝୁଣ୍ଟିଆ
ଗୋ ସଖି ରୁ (୧୦)

ଏତେ କହୁ କରି ବାଳୀ,
ମୋହେଣ ପଡ଼ିଲା ଢଳି,
ଧାଇଁ ଧରି ସଖି ରୋଦନ କରନ୍ତି ଆଳଟ ଚାମର ଢାଳି
ଗୋ ଦୂତୀ ରୁ (୧୧)

ଗୋବିନ୍ଦ ଗୋବିନ୍ଦ ବାଦ୍ୟ,
ଗଗନେ ଉଛୁଳେ ନାଦ,
ଦେବ କହେ ପ୍ରଭୁ କେବେହେଁ ନୋହିବ ଗୋବିନ୍ଦ ଭାବ ବିଚ୍ଛେଦ (୧୨)

———

# ମାଲ୍ୟବନ୍ତରେ ବର୍ଷାକାଳ

## ବଳରାମ ଦାସ

ଏଥୁ ଅନନ୍ତରେ ଗୋ ପାର୍ବତୀ ଦେବୀ ଶୁଣ,
ମାଲ୍ୟବନ୍ତ ପର୍ବତେ ରହିଲେ ରଘୁଗଣ ।
ଶ୍ରୀରାମର ଚିତ୍ତ ହୋଇଅଛି ଛନ୍ନ ଛନ୍ନ
ଜଳଧର ମେଘରେ ଯେ ଆବୃତ ଗଗନ ।
ଘଡ଼ଘଡ଼ି କରଣ ଯେ ମାରଇ ବିଜୁଳି
ସନ୍ଧ୍ୟାକାଳେ ଆକାଶରେ ଉଦେ ଆଦ୍ରାବଳୀ ।
ହାତୀଶୁଣ୍ଢ ଉର୍ଦ୍ଧ୍ୱକରି ମେଘ ଗରଜନ୍ତି
ନିର୍ଘାତ ଶବଦ କରି ଚଡ଼କ ମାରନ୍ତି ।
ପୂର୍ବଦିଗ ମେଘେ ଯାଇ ପଶ୍ଚିମେ ପଶନ୍ତି
ଶୀତଳ ପବନ ଯେ ବହଇ ଚଉକତି ।
ଦକ୍ଷିଣ ମେଦୁର ଯେ ସମୁଦ୍ର ପାଣି ତୋଳି
ଉତ୍ତର ଦିଗକୁ ହିଁ ସେ ଜଳ ଘେନି ଚଳି ।
ଇନ୍ଦ୍ରଧନୁ ଉର୍ଦ୍ଧ୍ୱ ଅଛଇ ଯେ ଘନ ଘନ
ଅସ୍ତକାଳେ ଆଦିତ୍ୟ ଦିଶଇ ରଙ୍ଗ ବର୍ଣ୍ଣ ।
ଦିବସେ ମଣ୍ଡଳାକାର ରାଶିରେ କୁହୁଳ
ପ୍ରଚଣ୍ଡ ପବନ ବହଇ ଝିଙ୍କି ଝାଙ୍କି ।
କ୍ଷଣେ ଝୁଲୁଝୁଲି କ୍ଷଣେ ଶୀତଳ ଯେ କରେ
କ୍ଷଣେ କ୍ଷଣେ ଦିବାକର ଦିଶେ ଆକାଶରେ ।
ସିନ୍ଧୁ ଗରଜଇ ପୁଣି ଦିଗ ରଙ୍ଗ ଦିଶେ
ଜଳଧର ଧୂମ୍ର ପୁଣ ଗଗନରେ କି ଯେ ।
କୁସୁମ ବର୍ଣ୍ଣ ହୋଇଣ ଆଚ୍ଛାଦଇ ଖରା
ଜଳ ଜଳ ଦିଶଇ ଯେ ଗଗନର ତାରା ।
ଚନ୍ଦ୍ରମା ମଣ୍ଡଳ ଯେ ଧୂସର ହୋଇ ଦିଶେ
ଭିତରେ ବାହାରେ ଯେ ନକ୍ଷତ୍ରଗଣ ମିଶେ ।
ନିର୍ମଳ ଗଗନେ ଯେ କ୍ଷଣକେ ମେଘ ଉର୍ଦ୍ଧ୍ୱ
ପୁଣିହିଁ ଗର୍ଜିଣ ସେ ଶୂନ୍ୟରେ ଆଚ୍ଛାଦଇ ।

ଦିବସେ ଗର୍ଜନ ଯେ କରଇ ଗମଗମ
ଭୂମିକମ୍ପ କରଣ କରଇ ଦମଦମ ।
ଆଷାଢ଼ ମାସ ପ୍ରବେଶ ହୋଇଲାକ ଯହୁଁ
ଝିମିଝିମି କରଣ ମେ ବରଷଇ ତହୁଁ ।
ବିଜୁଳି ଦେଖାଇଣ ମାରଇ ଘଡ଼ଘଡ଼
କଜାଣି ପର୍ବତୁ ଶୃଙ୍ଗ ପଡ଼ିବକ ଝଡ଼ ।
ଯହିଁ ପ୍ରବେଶ ହୋଇଲା ଦୁଃସହ ବରଷା
ନାନା ପକ୍ଷୀମାନେ ତହିଁ ଭିଆଇଲେ ବସା ।
ବୃକ୍ଷମାନେ ପଲ୍ଲବନ୍ତ କର୍ଥ ଲମ୍ବନ୍ତ ଲତା
ମୟୂର ଚଢ଼ାଇ ଯେ ମଦନେ ଉନମତ୍ତ ।
ମୃଗଭସ୍ମ ଗ୍ରୁଡଣ ଚରନ୍ତି ଏଣେ ତେଣେ
କୋକିଳ ଝଙ୍କାର ପଶିଲେ ଗହନ ବନେ ।
ବୃକ୍ଷମାନ ଦିଶନ୍ତି ଯେ ନୂଆ ପରକାର
କଦମ୍ବ ପୁଷ୍ପମାନେ ଫୁଟନ୍ତି ନଇନ୍ତର ।
ଜାମୁଫଳ ପାଚିକରି ପଡ଼ନ୍ତି ଭୂମିରେ
ବନଫଳ ପାଚି ପଡ଼ୁଛନ୍ତି କେତେ ତଳେ ।
ବନର କୁକ୍କୁଟମାନେ କାମେ ଖେଦା ଖେଦି
ପାତାଳ ଗଙ୍ଗା ନାମେ ଯେ ବହେ ତହିଁ ନଦୀ ।
ଜଳଖୁମ୍ପା କାହ୍ୱାମ ଯେ ପାତିହଂସାବଳୀ
ଖରହଂସ ବଳ ଯେ କରନ୍ତି ଜଳକେଳି ।
ଶ୍ରାବଣ ପ୍ରବେଶ ହୁଏ ଏଥୁ ଅନନ୍ତରେ
ଘୋରବୃଷ୍ଟି କରିଣ ବରଷେ ଜଳଧରେ ।
ଅଖଣ୍ଡିତ ଧାରା ଯେ ନ ଦିଶେ ଦଶଦିଶ
ବନ ପଲବଣ ପୁଣି ହୁଅଇ ଅଦୃଶ୍ୟ ।
ନଦୀମାନେ ବଢ଼ନ୍ତି ଯେ ପରେ ପୁଷ୍କରଣୀ
ପର୍ବତ ଉପରୁ ଝର ପଡ଼ଇ ଯେ ପାଣି ।
ସୂର୍ଯ୍ୟଙ୍କ କିରଣ ତେଜ ନ ଦିଶେ ଗଗନେ
ବୃକ୍ଷେ କମ୍ପମାନ ହୁଅନ୍ତି ପ୍ରଚଣ୍ଡ ପବନେ ।
ମାଲ୍ୟବନ୍ତ ପର୍ବତେ ଯେ ଶ୍ରୀରାମ ଅଛନ୍ତି
ଅନେକ ଦୁଃଖେଣ ସେ ବରଷା ବଞ୍ଚୁଛନ୍ତି ।

———

# ଗୋପୀଭାଷା

## ଦନେଇ ଦାସ

---

### ତୃତୀୟ ଛାନ୍ଦ

× × ×

ଆଣି ପାଶଲେ ତୋତେ ସେବଥିବୁ
ଖାଇବାକୁ ଖଣ୍ଡରେ ଷୀର ଦେବୁ ।
ଶୁଣି ମଉନ ହୋଇଲା କୋକିଳ
ଚନ୍ଦ୍ର ଉଦୟ ଦେଖିଣ ବିକଳ ।
ତାକୁ ଗୋପୀଏ କରନ୍ତି ଦସ୍ତିନୀ
ତୋତେ ଦେଖିଲେ ହୃଦ ହୁଏ ହାଣି ।
ପୂର୍ବ ଗଲା କଥା ମନେ ପଡ଼ଇ
ଆମ୍ଭ ହାଡ଼ରୁ ମାଉଁସ ଝଡ଼ଇ ।
ଅଛ ଏଡ଼େ ହୋଇ ଉଦେ ନୋହୁରୁ
ଆମ୍ଭେ ଗଲେ ତୁ କି ସୁଖ ପାଇବୁ ।
ମନେ ବିଚାରି ଗୋପୀଏ ବୋଇଲେ
କୃଷ୍ଣ ଗଲେ ଏଥୁ ଭଲ ନୋହିଲି—
ଏଥି ଥିଲେ ହୁଅନ୍ତା ମହା ଖଣ୍ଡ
ତହିଁ ହୋଇଛୁ ସବୁର ଠାକୁର ।
ସ୍ଥାନ ବିଶେଷ ଦ୍ରବ୍ୟ ପୂଜା ପାଇ
ଯେଉଁ ସ୍ଥାନେ ଯେଉଁ ଦ୍ରବ୍ୟ ବିକାଇ ।
ଥିଲା ଶବରଣୀ ହାତେ ମାଣିକ
ତାହା ଚିହ୍ନି ଦେନଗଲା·ଗୁଣିକ— ।
ଯେହ୍ନେ ଶାମୁକୁଁ ବାହାରେ ମୁକୁତା
କାଳେ ଭୋଗ କରେ ତାହା ଦେବତା ।
ଲୁଣ ଘୋଷୁ ଘୋଷୁ କ୍ଷୀନ ହୋଇଲା
ଏକ ଗୋପୀଏ ଆଇଣ ବୋଇଲା ।

ଯାହା ମହିମା ଦେବଙ୍କୁ ଦୁର୍ଲଭ
କାହିଁ ପ୍ରାପତ ଆମ୍ଭଙ୍କୁ ସୁଲଭ ।
ଭାଗ୍ୟ ଉଣ୍ଣାସିବା ପାଇଁ ଜନମ
ଆନ ବୋଲେ କର ନୋହେ ସେମାନ
ଭାଗ୍ୟ ଯେତେ ଧନ ଥିଲା ଆମ୍ଭର
କୃଷ୍ଣ ଯେଣ ଖେଳୁଥିଲୁ ସଙ୍ଗର ।
ଜଗଦାତ୍ମାରେ ଜଗତ ପୂରତ
କୃଷ୍ଣ ଜାଣିଲେ ଗୋପୀଙ୍କ ଆରତ ।
ବେଗେ ଗଲେ ଉଦ୍ଧବଙ୍କୁ ପାଶ
ତୁମ୍ଭେ ଗୋପପୁରକୁ ଯାଇଁ ଆସ ।
ତୁ ଯେ ଭକତ ଆମ୍ଭର ବାନ୍ଧବ
ତେଣୁ ବରଣୁଅଛୁ ଉକ୍ତ ଠାବ ।
ମୋତେ ନ ଦେଖିଣ ଗୋପୀ ଗୋପାଳ
ନିରନ୍ତରେ ହେଉଛନ୍ତି ବିକଳ ।
ମୋତେ ନ ଲେଉଡ଼ନ୍ତି ଗୋପୀ ଯେମନ୍ତ
ତାଙ୍କୁ ବୁଝାଇ କହିବ ତେମନ୍ତ ।
ଆଜ୍ଞା ପ୍ରମାଣେ ଉଦ୍ଧବ ଚଳଇ
ଯାଇଁ ଗୋପ ନଗରେଣ ମିଳଇ ।
ପାଶେ ବସାଇଣ ଗୋପୀ ଗୋପାଳ
ତାଙ୍କୁ ବାରତା ପୁଚ୍ଛନ୍ତି ସକଳ ।
କୃଷ୍ଣ କହିବା କଥା ମାନ କହି
ବେଗେ ଉଦ୍ଧବ ବାହୁଡ଼ି ଆସଇ ।
ଗୋପୀ ବିରହ ବୋଲ ସୁଧାରସ
ଶୁଣି ସୁଜନେ କଲୁଷ ବିନାଶ ।
କୃଷ୍ଣ ପଦ୍ମପାଦରେ ଦେଇ ଚିତ୍ତ
ଦାସ ଦନାଇ ସେବେ ଗୋପୀନାଥ ।

---

# ପ୍ରେମ ପଞ୍ଚାମୃତ

## ଭୂପତି ପଣ୍ଡିତ

### ଚତୁର୍ଥ ଅଧ୍ୟାୟ

ଜ୍ଞାନ ବୋଲନ୍ତି ମୁନି ଶୁଣ । ମୁନି କହନ୍ତି ହେ ରାଜନ ॥
ଶୁଣି ହୋଇଲେ କୃତ କୃତ । ବିଚାରି ଗୋବିନ୍ଦ ଚରିତ ॥
ଗୋପୀଏ ବଂଶୀବଟ ତଳେ । ବିଦୁର ହୃଦସ୍ଥ କମଳେ ॥
ଏକ ଗୋପୀଏ କହେ ଶୁଣ । ଏ ଗଲା ଏକାଦଶୀ ଦିନ ॥
ସୁଜ୍ଞାନ ପଣ୍ଡା ଏହା କହି । ଏ କୃଷ୍ଣ ସର୍ବଘଟେ ରହି ॥
ଏ ଗୋ ସବୁଙ୍କୁ ଦେଖୁଥାନ୍ତି । ଏହାଙ୍କୁ କେହି ନ ଦେଖନ୍ତି ॥
ଏକଥା ତାର ମୁଖୁଁ ଶୁଣି । ମୁଁ ଆଜ ମନେ ମନେ ଗୁଣି ॥
ଏମନ୍ତ ଗହିର ଘୋର ବନେ । ଆମ୍ଭେ ଗୋ ଧରିବା କେସନେ ॥
ସୁଚେତା କହେ ଏହା ଶୁଣି । ମୁଁ ବିପ୍ର ମୁଖୁ ଅଛି ଶୁଣି ॥
ପୂର୍ବେ ଯେ ହିରଣ୍ୟ କୁମର । ସେହି ସେବକ ଗୋବିନ୍ଦର ॥
ତାହାକୁ ଧରି ତା ବଇରୀ । ବୋଇଲା କାହିଁ ତୋର ହରି ॥
ସେ ତାକୁ ବୋଇଲାରେ ଶୁଣ । ଜଗତେ ପୂର୍ଣ୍ଣ ଭଗବାନ ॥
ରଖିବ ବୋଲି ନିଜ ଦାସ । ଏ ସ୍ତମ୍ଭେ ହୋଇବେ ପ୍ରକାଶ ॥
ସେ ସ୍ତମ୍ଭ ସ୍ୱଭାବେ ପଥର । ତହୁଁ ସେ ହୋଇଲେ ବାହାର ॥
ଏ ରୂପେ ମଲା ତା ବଇରୀ । ପ୍ରକାଶ ସେହି ରୂପ ଧରି ॥
ସେ ମନ ସ୍ତମ୍ଭେ ଦୃଢ଼ କଲା । ସ୍ତମ୍ଭେ ଗୋବିନ୍ଦକୁ ପାଇଲା ॥
ଆମ୍ଭର ମନ ଯେବେ ସତ । ଯାଇଛି ଗୋବିନ୍ଦ ସଙ୍ଗତ ॥
ସେ ଧରି ଆଣିମ ପ୍ରମାଣ । ଏକଥା ମୂଳ କରି ଜାଣ ॥
ସୁଧର୍ମ ବୋଲନ୍ତି ବିଦୁର । କାହ୍ନା ବଚନ ମନେ ଧରି ॥
କୃଷ୍ଣଙ୍କୁ କେ ଧରି ପାରିବ । ବ୍ରହ୍ମା, ବାସୁକୀ, ବାସୁଦେବ ॥
ଯଜ୍ଞାଦି ନାନା ଧର୍ମେ ସତ । କୃଷ୍ଣ ହୁଅନ୍ତି ପରାପତ ॥
ପୂର୍ବେ ଯେ ବଳି ଦଣ୍ଡଧାରୀ । ଯଜ୍ଞାଦି ନାନା କର୍ମ କରି ॥
ତାହାର ନିଜ କର୍ମ ଦେଖି । ଭିଖାରି ହେଲା ପଦ୍ମମୁଖୀ ॥

ଏବେ ଗୋ ଦେଖ ଧର୍ମବଳ । ଗୋବିନ୍ଦ ତାର ଦ୍ୱାରପାଳ ।
ଏଣୁ ଜାଣିଲ୍ କଥା ସତ । କୃଷ୍ଣଟି ଧର୍ମରେ ପ୍ରାପତ ॥
ଯେବେ ଆମ୍ଭର ଧର୍ମ ଥିବ । ତାହାର ଇଚ୍ଛାରେ ଆସିବ ॥
ସୁଧର୍ମା ମୁଖୁ ତାହା ଶୁଣି । ବୋଲନ୍ତି ରାଧା ଠାକୁରାଣୀ ॥
ଶୁଣ ସୁଧର୍ମା ଆଗେ ଆସ । କହିବା ତତ୍ତ୍ୱ ଉପଦେଶ ॥
ଏ ନାନାମତେ ଧର୍ମ କରି । ପ୍ରାପତ ହୁଅନ୍ତି ଶ୍ରୀହରି ॥
ଏ ଧର୍ମ ଫଳ କରି ପୂର୍ଣ୍ଣ । ଅନ୍ତର ହୋନ୍ତି ଭଗବାନ ॥
ଏ ପରାପତ ତିର ନୁହେଁ । ପୁଣି ପଡ଼ଇ ମାୟା ମୋହେ ॥
ଖାତକ ଶୁଝିଗଲେ ଋଣ । ସାହୁର ନାହିଁ ପ୍ରୟୋଜନ ॥
ତଦବତ ସୁଝ ଧର୍ମ ଗୁଣ । ଅନ୍ତର ହୋନ୍ତି ଭଗବାନ ॥
ନବଧା ଭକ୍ତି ମଧ୍ୟେ ଜାଣ । ସବୁରି ପ୍ରେମଟି ପ୍ରଧାନ ॥
ପ୍ରେମେ ଅବଶ୍ୟ କୃଷ୍ଣ ପାଇ । କୃଷ୍ଣ ଯେ ନରହିଲେ ରହି ॥
ଅପୀଡ ପ୍ରୟୋଜନେ ତାର । ଗୋବିନ୍ଦ ସନ୍ଧନେ ଅନ୍ତର ॥
ଆମ୍ଭର ପ୍ରୟୋଜନ ପ୍ରେମ । ଏଣୁ ଏ ନୁହଇ ଉତ୍ତମ ॥
ଆମ୍ଭର ନିଜ ପ୍ରୟୋଜନେ । ଆସିଲ୍ ତୋର ବେଣୁ ସ୍ୱନେ ॥
ପ୍ରୟୋଜନରେ ପ୍ରେମ ଦେଖି । ଗୋବିନ୍ଦ ଗଲେଟି ଉପେକ୍ଷି ॥
ଏବେହେଁ ନିଜ ପ୍ରୟୋଜନେ । ତାହାଙ୍କୁ ଖୋଜୁଅଛୁ ବନେ ॥
ଅପ୍ରୟୋଜନ ପୂର୍ଣ୍ଣ କରି । ନିଷ୍ଟୟ ଗୁଡ଼ିପିବ ହରି ॥
ଗୁଡ଼ିଲ ହରିରେ ଆମ୍ଭର । ହୋଇବ ପ୍ରେମ ବଳାତ୍କାର ॥
ଦର୍ଶନ ବାଞ୍ଛା ମାତ୍ର ଥିବ । କାଲେ ଦର୍ଶନ ଯେ ନୋହିବ ॥
ଦର୍ଶନେ ନ ରସିବ୍ ମନ୍ନ । ଏକାନ୍ତ ପ୍ରେମରେ ନିମଗ୍ନ ॥
ଦର୍ଶନ ସ୍ପର୍ଶନରେ ଇଚ୍ଛା । ନ ଥିବ କିଛି ମନୋବାଞ୍ଛା ॥
ତେବେ ଲଭିବ କୃଷ୍ଣ ରସ । କୃଷ୍ଣ ହୋଇବେ ଆମ୍ଭ ବଶ ॥

———

# ଉଦ୍ଧବ-ଶ୍ରୀକୃଷ୍ଣ ସମ୍ବାଦ

## ଜଗନ୍ନାଥ ଦାସ

---

—ଶ୍ରୀ ଭଗବାନୁବାଚ—

କହନ୍ତି ପ୍ରଭୁ ପଦ୍ମପାଣି । ଶୁଣ ଉଦ୍ଧବ ସାଧୁବାଣୀ ॥
ତୁ ଅଟୁ ଭକତ ପ୍ରଧାନ । ତୋତେ ପ୍ରସନ୍ନ ମୋର ମନ ॥
ମୁହିଁ କହିଲି ଧର୍ମ ଯେତେ । ଆଗମ ନିଗମ-ଉକତେ ॥
ସେ ଧର୍ମ ଦୃଢ କରି ମନେ । ସାଧିବ କରି ସାବଧାନେ ॥
ଯେବଣ ଧର୍ମ କୁଳଧର୍ମ । ଯେ ବିଧି, ଆଶ୍ରର ଆଶ୍ରମ ॥
କର୍ମ କରିବ କର୍ମ ତେଜି । ସାତ୍ତ୍ୱିକ୍ୟେ ମୋର ପାଦେ ଭଜି ॥
ଜୀବକୁ ଦୟା ଶୁଦ୍ଧ ଚିତ୍ତେ । ମହା ଗହନ ଏ ଜଗତେ ॥
ଆତ୍ମଜ୍ଞାନ ବିବର୍ଜଇ । ସର୍ବ ବିକାର ମାୟାମୟୀ ॥
ସ୍ୱପନେ ନାନା ଉପଭୋଗ । ସେ ଯେହ୍ନେ ଆତ୍ମାର ସଂଯୋଗ ॥
ମଣଇ ସତ୍ୟ ପ୍ରାୟେ ତାହା । ଦୃଷ୍ଟି ଶ୍ରବଣେ ବସ୍ତୁ ମାୟା ॥
ଯେତେ ଦେଖଇ ନାନାରଙ୍ଗେ । ବିଫଳ ହୁଏ ନିଦ୍ରା ଭଙ୍ଗେ ॥
ଏ ମାୟା ତ୍ରିଗୁଣେ ଜଡ଼ିତ । ବ୍ରହ୍ମାଦି ପ୍ରପଞ୍ଚ ଜଗତ ॥
ଏଣୁ ପ୍ରବୃତ୍ତି ଧର୍ମ ଏଡ଼ି । ନିବୃତ୍ତି ଧର୍ମେ ଚିତ୍ତ ଜଡ଼ି ॥
ସାଧୁ ସଙ୍ଗମେ ସେବା କରି । ଧର୍ମେ ସାଧିବ-ଶିକ୍ଷା ଧରି ॥
ସୁତ, କଳତ୍ର, ଧନ, ପ୍ରାଣ । ଯେ ମୋତେ କରେ ସମର୍ପଣ ॥
ଏମନ୍ତେ ଗୁରୁସେବା କରି । ଚିତ୍ତେ ମୋହର ରୂପ ଧରି ॥
ତେଜିବ ମାନ ଅହଂକାର । ମଦ-ମତ୍ସର ଯେ ବିକାର ॥
ସୁହୃଦ ଭାବ ଶୁଦ୍ଧଚିତ୍ତେ । ନିର୍ମଳ ହୃଦୟ ବିଭୂତେ ॥
ଜ୍ଞାନ ଅଭ୍ୟାସେ ଅବିରତ । ଚଞ୍ଚଳ ନ କରିବ ଚିତ୍ତ ॥
ସମତା ଦୃଷ୍ଟି ସତ୍ୟଭାଷା । ନିତ୍ୟ କରିବ ଏଣେ ଆଶା ॥
ଗଗନ ଯେହ୍ନେ ସର୍ବଶୂନ୍ୟ । ସେ ରୂପେ ହୋଇ ଉଦାସୀନ ॥
ବିମୁକ୍ତ ବଛ ମହାଶୟ । ସମ୍ପଦ ବିପଦ ସଂଶୟ ॥
ସର୍ବ ଦେଖିବ ବିଷ୍ଣୁମୟ । ଧରିବ ଉଦାସୀନ ଦେହ ॥

କେବେହେଁ ନୁହଁ ଅଭିମାନୀ । ଆତ୍ମା-ପରତେ ତତ୍ତ୍ୱଜ୍ଞାନୀ ॥
ଦେହକୁ ଦେଖୁଥିବ ଭିନ୍ନେ । କାଷ୍ଠ ଯେସନ ହୁତାଶନେ ॥
ଏମନ୍ତେ ଗୁରୁବାକ୍ୟ ଜାଣି । ଅବସ୍ଥା ପ୍ରାପ୍ତ ସର୍ବ ମଣି ॥
ଜଗତ ଦେଖି ବିଷ୍ଣୁମୟ । ଛୁଡ଼ିବ ସକଳ ସଂଶୟ ॥
କର୍ମ କରଣେ ଫଳପାଇ । ପ୍ରାଣୀ ତା ଅବଶ୍ୟ ଭୁଞ୍ଜଇ ॥
ସ୍ୱତନ୍ତ୍ର ନୋହେଁ ସର୍ବକାଳେ । ଦୁଃଖେ ଭ୍ରମଇ ଏ ଶସ୍ୟଲେ ॥
ଜୀବର ଦେହେ ବନ୍ଧ ପାଶ । କେଭେହେଁ ନାହିଁ ସୁଖ ଲେଶ ॥
ନିଗୂଢ଼ ବନ୍ଧନ ପଞ୍ଜରେ । ବନ୍ଦୀ ଯେସନେ ବନ୍ଦୀ ଘରେ ॥
କାଳ ବଞ୍ଚଇ ଦୁଃଖ ସହି । ମୂର୍ଖ ପଣ୍ଡିତ ଭେଦ ନୋହି ॥
ଦାରୁଣ ଦୁଃଖ ସୁଖ ମଣେ । ଦୁଃଖକୁ ସୁଖ ପ୍ରାପ୍ତ ଗଣେ ॥
ଏମନ୍ତେ ବୃଥା ଅହଙ୍କାରେ । ଜୀବ ଭ୍ରମଇ ନିରନ୍ତରେ ॥
ଏ ଯେବେ ଦୁଃଖ ସୁଖ ବୁଝେ । ସକଳ ମୃତ୍ୟୁ ସଙ୍ଗେ ଯୁଝେ ॥
ବୁଦ୍ଧି-ବିବେକ-ଜ୍ଞାନ-ବଳେ । ମରଣ ଜିଣିପାରେ ହେଳେ ॥
ଏହା ନ ବୁଝି ମୂଢ଼ଜନେ । ତପ କରନ୍ତି ଦୃଢ଼ ମନେ ॥
ଏହାର ପୂର୍ବ ତପ-ଫଳେ । ଯଦ୍ୟପି ଅର୍ଥ-କାମ ମିଳେ ॥
ତେବେହେଁ ଦୁଃଖ ନୋହେ ନାଶ । ଭୁଞ୍ଜନ୍ତେ ଲଭେ ବହୁ କ୍ଳେଶ ॥
ଯାହାକୁ ବାନ୍ଧି ନେଇ ପଥେ । ଶ୍ମଶାନେ ଶିରଚ୍ଛେଦ ଅର୍ଥେ ॥
ତାହାର ଯେତେ ସୁତ, ଅର୍ଥ । ରକ୍ଷଣେ ନୁହନ୍ତି ସମର୍ଥ ॥
ସଂସାରେ ଦେଖିଶୁଣି ଯେତେ । ବସ୍ତୁରେ ଦୁଃଖ ଏ ସମସ୍ତେ ॥
ମାନ-ମତ୍ସର ମୋହ-ଲୋଭ । ବିନାଶ-ଅପଚୟ ଭାବ ॥
ଏ ସର୍ବ ଦୁଃଖର କାରଣ । ଉଦ୍ଧବ ଏହା ଭଲେ ଜାଣ ॥
କର୍ମର ଫଳ ନାନା ଗତି । ଏଣୁ ତୁ ବୁଝିଥାଅ ମତି ॥
ବିଧି-ବିଧାନ ନାନାବିଧାନ । ଯଜ୍ଞେ ଦେବତା-ଆରାଧନ ॥
ସେ ପୁଣ୍ୟ ବଳେ ସ୍ୱର୍ଗେ ଯାଇ । ଭୁଞ୍ଜଇ ଦିବ୍ୟ ଦେହ ବହି ॥
ନାନା ପ୍ରକାରେ ସୁଖ ଯେତେ । ଭୋଗ କରଇ ନାନା ମତେ ॥
କର୍ମ ନିରତ ରହି ରଥେ । ଫଳ ଭୁଞ୍ଜଇ ମନୋରଥେ ॥
ଗନ୍ଧର୍ବ କିନ୍ନର-ଯୁବତୀ । ରଥ ପାଖୁଣେ ପନ୍ତି ପନ୍ତି ॥
ବିବିଧ ନୃତ୍ୟ ଗୀତ ଗାନ । କରି ତୋଷନ୍ତି ତାର ମନ ॥
ଦିବ୍ୟ ଯୁବତୀ ଗଣ ସଙ୍ଗେ । ବିମାନେ ରମେ ନାନା ରଙ୍ଗେ ॥
କ୍ଷୁଦ୍ର କିଂକିଣୀ ନାଦ-ଧୀରେ । ଲଳିତ ମଙ୍ଗଳ ସୁ-ସ୍ୱରେ ॥
ଯାବତ କର୍ମଫଳ ପୂରେ । ତାବତ ସ୍ୱର୍ଗ ଭୋଗ କରେ ॥
ପୁଣି ପଡ଼ଇ କର୍ମ କ୍ଷୟେ । ସଂସାରେ ବିଷ୍ଣୁ ମାୟା ମୋହେ ॥

ଏଣୁ ଅର୍ଜିତ କର୍ମ ପାକେ । ଜୀବ ଭ୍ରମଇ ଦୁଃଖ ସୁଖେ ॥
ସାଧୁ ସଙ୍ଗତେ ଏତେ ଜ୍ଞାନ । ଉଦ୍ଧବେ କହିଲେ ମାଧବ ॥
ସୁକର୍ମେ ସାଧୁସଙ୍ଗ ପାଇ । କୁକର୍ମେ ଅସାଧୁ ମିଳଇ ॥
ପୂର୍ବ ବିପାକ କର୍ମଫଳେ । ଅସାଧୁ ସଙ୍ଗ ନିତ୍ୟ ମିଳେ ॥
ଅଧର୍ମ ବଢ଼େ ଦିନେ ଦିନେ । ନିରତେ କୁସଙ୍ଗ—ମିଳନେ ॥
ଯେ ନାମେ ରତ ନାସ୍ତିମୂତ । ପାଷାଣ୍ଡ, କୃପଣ, କୁତ୍ସିତ ॥
ଜଡ଼ ପୀଡ଼ନେ ନିତ୍ୟ ହିଂସା । ଦୁଃଖ ଗହନେ କରେ ଆଶା ॥
ଯଜ୍ଞ ଆରମ୍ଭି ବିଧିସ୍ଥାନେ । ପଶୁମାରଣେ ଅବଧାନେ ॥
କଳ୍ପିତ ପିତୃଯଜ୍ଞ-ଜଳେ । ପଶୁକୁ ବଧ କରେ ବଳେ ॥
ପୂଜଇ ଭୂତ ପ୍ରେତ ଗଣେ । ଆତ୍ମାର ହିଂସା ସେ ନ ମଣେ ॥
ଜୀବ ମାରଣ କର୍ମ କଲେ । ନରକେ ପଡ଼େ ଅନ୍ତକାଳେ ॥
ମାୟା ଯନ୍ତ୍ରିତ ନାନା ଯୋନି । ଭ୍ରମଇ ନିଜ ଆତ୍ମା ଘେନି ॥
ସ୍ଥାବର ଆଦି ବୃକ୍ଷ ଦେହେ । ପଶୁ ପତଙ୍ଗ କୀଟ ହୁଏ ॥
ଶ୍ୱାନ, ଶୃଗାଳ, ବାଜି, ଗଜେ । ଏମନ୍ତେ ନାନା ଯୋନି ଭଜେ ॥
ଅଶେଷ କୋଟି ଯୋନି ଭ୍ରମି । ଅର୍ଜିତ କର୍ମେ ପଥଶ୍ରମୀ ॥
ଏମନ୍ତେ ଦୁଃଖ ଅବଶେଷେ । କିଞ୍ଚିତ ଧର୍ମର ବିଶ୍ୱାସେ ॥
ଦୁର୍ଲ୍ଲଭ ମନୁଷ୍ୟ-ଶରୀରେ । ଦେହ ଲଭଇ ମର୍ତ୍ତ୍ୟପୁରେ ॥
ଭାଗ୍ୟେ ଦୁର୍ଲ୍ଲଭ-ଦେହ ଧରି । ପୁଣି ଭ୍ରମଇ କର୍ମ କରି ॥
କର୍ମିଟି ନାନା ଦୁଃଖ ଦେଇ । କିଞ୍ଚିତ ସୁଖ ନାହିଁ ତହିଁ ॥
କର୍ମ କରନ୍ତେ ପାଏ ଦେହ । ଏଣୁଟି କର୍ମ ଦୁଃଖମୟ ॥
କୁବେର ବରୁଣ ଅନଳ । ଏ ଆଦି ଦଶ ଦିଗପାଳ ॥
ମୋ ତହୁଁ ଜନମ ଲଭନ୍ତ । ଲୟେ ନିକଟେ ନ ରହନ୍ତ ॥
ଦେଖ ଏକଳ୍ପ-ଅଧିକାରୀ । ସ୍ୱଭାବେ ମୋହ ଅଂଶଧାରୀ ॥
ବ୍ରହ୍ମା ମୋହର ଅଂଶ ବହି । ସକଳ ସୃଷ୍ଟି ସେ କରଇ ॥
ପୁଣ ସବାଶୁ ସୃଷ୍ଟି ସୃଜେ । ଏଣୁ ବିଷୟ ଜୀବଭୁଞ୍ଜେ ॥
ଏଣୁ ଏ ଜୀବ କର୍ମମୟେ । ଅକର୍ମେ ଦଣ୍ଡେହେଁ ନ ରହେ ॥
ଯାବତ ବିଷୟର ଗତି । ପୁଣ କଳ୍ପିତ ଭାବ ଚନ୍ତ ॥
ତାବତ ନାନାବିଧ ରୂପେ । ଜୀବ ଭ୍ରମଇ ମୋହ କଳେପ ॥
ଯାବତ ନାନାଭାବେ ଛନ୍ନ । ତାବତ ଜୀବ ପରାଧୀନ ॥
ଈଶ୍ୱର ତହୁଁ ଭୟ ପାଇ । ଭ୍ରମଇ ମାୟାମୟ ହୋଇ ॥
ଅନେକ ଭ୍ରମି ଭ୍ରମେ ଫୁଟେ । କେବେହେଁ ମାୟା ତା ନ ତୁଟେ ॥
ଏମନ୍ତେ ଗୋବିନ୍ଦର ବାଣୀ । ଉଦ୍ଧବ ବୋଲେ ତାହା ଶୁଣି ॥

ପ୍ରଣାମ କରି କୃଷ୍ଣପଦେ । ବୋଲେ ଆନନ୍ଦ ଗଦଗଦେ ॥
ଶୁଣ ହେ ପ୍ରଭୁ ଦାମୋଦର । କି ଗୁଣେ ଜୀବ ଏ ଶରୀର ॥
ଜୀବନ ଅଛୁ ଦେହ ମଧ୍ୟେ । ନିର୍ଲେପ ପରମ ଆନନ୍ଦେ ॥
ଗୁଣେ ବନ୍ଧନ ନାହିଁ ତାର । ସ୍ୱଭାବେ ନିତ୍ୟ ନିର୍ବିକାର ॥
ତାର ବନ୍ଧନେ ଉନଗୁଣେ । ତୁ ନାଥ ବୋଲ୍ କି କାରଣେ ॥
କେମନ୍ତେ ନୋହେତ ବନ୍ଧନ । କହ ହେ ଦେବକୀ ନନ୍ଦନ ॥
କି ରୂପେ ଥାଇ ଅନ୍ତର୍ଗତେ । ସଂସାରେ ବସ୍ତରେ କେମନ୍ତେ ॥
କେତେ ଲକ୍ଷଣେ ତାକୁ ଜାଣି । କେମନ୍ତେ ଭକ୍ଷେ ଅନ୍ନ-ପାଣି ॥
କି ରୂପେ ପ୍ରଚରଇ ଜନେ । ଆସନ-ଭୋଜନ-ଶୟନେ ॥
ନିଷ୍ଟଲେ ରହେ ଯେଉଁ ସ୍ଥାନେ । କହ କେଶବ ତୋଷ ମନେ ॥
ତୁ ନାଥ ମୋର ପ୍ରାଣ ପତି । ଭକ୍ତ ବତ୍ସଲ ଦାଶରଥି ॥
ଅଚ୍ୟୁତ, ଅନନ୍ତ, ମୁରାରି । ବଲେ କେ ପାରେ ଜୀବଧରି ॥
ସଂସାରେ ବଦ୍ଧ ମୋହ ଦୂରି । କେମନ୍ତେ କଲନ୍ତି ତାର ଦେହୀ ॥
ଏକ ଅନେକ ଥବା କେତେ । କହ ଗୋବିନ୍ଦ ଶୁଦ୍ଧ ଚିତ୍ତେ ॥
ମୋହର ଚିତ୍ତେ ଭ୍ରମ ଯେତେ । କାଢ଼ିଲି ତୋହର ଅଗ୍ରତେ ॥
ମୋ ଘରେ ଜ୍ଞାନ ଦୀପ ଜାଳି । ଅଜ୍ଞାନ ଖଣ୍ଡ ବନମାଳୀ ॥
ବୋଲଇ ବିପ୍ର ଜଗନ୍ନାଥ । କୃଷ୍ଣ ଚରଣେ ଦେଇ ଚିତ୍ତ ॥
ଉଦ୍ଧବ ପଚାରିଲେ ମୋତେ । ଶ୍ରୀ ଏକାଦଶ ଭାଗବତେ ॥
ସୁଜନେ ଦିଅ ଏଥେ ଚିତ୍ତ । ମୁଁ ତୁମ୍ଭ ଭୃତ୍ୟଙ୍କର ଭୃତ୍ୟ ॥
ପ୍ରତି ଜନ୍ମରେ ମୋର ମତି । ଦଣ୍ଡେ ନ ଛାଡ଼ୁ ତୁମ୍ଭ ଭକ୍ତି ॥

ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ଏକାଦଶସ୍କନ୍ଧେ
ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ ନାମ ଏକାଦଶୋଽଧ୍ୟାୟଃ ।



# ବିଦର୍ଭ ଯାତ୍ରା

## କାର୍ତ୍ତିକ ଦାସ

ଶୁଣ ସାଧୁଜନେ ଷଷ୍ଠ ଗ୍ରନ୍ଥ ଏ ଗୀତ ।
ଏଥୁ ଅନନ୍ତେଣ ହୋଇଲା ଯେ ପ୍ରଭାତ । ୧ ।
ପୂର୍ବଦିଗ ଦିଶିଲାକ ଲୋହିତ ବର୍ଣ୍ଣ ।
ମଳିନ ଦିଶିଲା ତାରା ପଟଳ ଜହ୍ନ । ୨ ।
ତରୁବର କୋଟରେ ରହିଲା ଉଲୁକ ।
ଚକ୍ରବାକୀ ସଙ୍ଗେ ଆସି ମିଳିଲା କୋକ । ୩ ।
ଫୁଟିଲା କମଳ ବନ ପ୍ରସରଇ ଗନ୍ଧ ।
ଭ୍ରମର କୁମୁଦ କୋଷେ ରହିଲା ବନ୍ଧ । ୪ ।
ହାରାବଳୀ ଦେହରେ ଶୀତଳ ଲାଗିଲା ।
ପ୍ରଦୀପମାନଙ୍କ ଉଗ୍ର ତେଜ ଭାଙ୍ଗିଲା । ୫ ।
ବଧୂ ଜନେ ଅଙ୍ଗେ ଲଜ୍ଜା ଭୂଷଣ କଲେ ।
ଅଭିସାରୀମାନେ ନିଜ ପୁରକୁ ଗଲେ । ୬ ।
ପବନ ବହଇ ମନ୍ଦ ଗନ୍ଧ ଶୀତଳ ।
ପ୍ରତିଧ୍ୱନି କରନ୍ତି ଭ୍ରମର କୋକିଳ । ୭ ।
ମୟୂର କପୋତ କରେ ମଧୁର ନାଦ ।
ଘନ ଘନ ରଟନ୍ତି ସେ ଚରଣାୟୁଧ । ୮ ।
ଶଯ୍ୟା ତେଜି ପଲଙ୍କରେ ବିଜୟେ ହରି ।
ବ୍ରହ୍ମଚିନ୍ତା ଆପଣାର ସ୍ୱରୂପେ କରି । ୯ ।
ସ୍ନାନ ସାରି ବିପ୍ର ହୋମ ମନ୍ଦିରେ ପଶି ।
ହୋମ ଦେଇ ମନ୍ତ୍ରଭାଗ ପଢ଼ନ୍ତି ବସି । ୧୦ ।
ପ୍ରଭାତ ସମୟେ ନିତ୍ୟ କର୍ମନ୍ତ ସାରି ।
ଦାରୁକକୁ ରାଇ ଆଜ୍ଞା ଦେଲେ ଶ୍ରୀହରି । ୧୧ ।
ଆଜ୍ଞା ପାଇ ନନ୍ଦିଘୋଷ ଆଣିଲା ସାଜି ।
ଯୋଚିଲାକ ତହିଁ ନେଇ ଅପୂର୍ବ ବାଜି । ୧୨ ।

ଶୋଭା ପାଉଅଛି କି ଗରୁଡ଼ କେତନ ।
ଥୋଇଲେ ଶାରଙ୍ଗ ଗଦା ସାୟକମାନ । ୧୩ ।
ନନ୍ଦିଘୋଷ ରଥେ ହରି ବିଜୟ କଲେ ।
ବିଦର୍ଭ ଦେଶକୁ ରଥ ବାହା ବୋଇଲେ । ୧୪ ।
ବ୍ରାହ୍ମଣଙ୍କୁ ବସାଇ ରଥର ଉପର ।
ଚଳାଇଲେ ରଥବର ପବନୁଁ ଖର । ୧୫ ।
ଏମନ ଦେଖିଣ ରାମ ମନେ ବିଚାର ।
ନନ୍ଦିଘୋଷ ଚଢ଼ି ଏକା ଗଲେ ତ ହରି । ୧୬ ।
ରୁକ୍ମିଣୀର ପାଇଁ ବିଜେ କଲେ ଗୋବିନ୍ଦ ।
ରାଜାମାନଙ୍କର ସଙ୍ଗେ ହୋଇବ ଦ୍ୱନ୍ଦ୍ୱ । ୧୭ ।
ଏତେ ବୋଲି ବିଜେ କଲେ ତାଳଧ୍ୱଜେଶ ।
ଚଳିଲେକ ସଙ୍ଗେ ରଥୀ ପଦାତିଗଣ । ୧୮ ।
ଚରଣ ରେଣୁରେ ରବିମଣ୍ଡଳ ଛନ୍ନ ।
ବାଟରେ ଭେଟିଲେ ଯାଇ ମଧୁସୂଦନ । ୧୯ ।
ବୋଲନ୍ତି ସେ ରାମ କୃଷ୍ଣ ମୁଖକୁ ଚାହିଁ ।
ଏକା ହୋଇ ଆଇଲ ଆମ୍ଭକୁ ନ କହି । ୨୦ ।
ଜରାସନ୍ଧ ରାଜା ଆଦି ଅନନ୍ତ ମଲ୍ଲ ।
ଏଥକୁ ଆସିବା ଏକ ମୁହୂର୍ତ୍ତ କାଳ । ୨୧ ।
ବଳଭଦ୍ରଙ୍କର ଏହି ବଚନ ଶୁଣି ।
ହସିଣ ବୋଲନ୍ତି ପ୍ରଭୁ ଶାରଙ୍ଗପାଣି । ୨୨ ।
ତୁମ୍ଭର ପ୍ରସାଦେ ଆମ୍ଭ ଭୟେଛି କାହିଁ ।
ବିଶେଷେ ଆଇଲ ତୁମ୍ଭେ ସୁବଳ ହୋଇ । ୨୩ ।
ଯେତେକ ଦୁଷ୍ଟରାଜା ଅଛନ୍ତି ମର୍ତ୍ତ୍ୟଲୋକରେ
ସମସ୍ତେ ହୋଇବେ ହତ ଆମ୍ଭ ହାତରେ । ୨୪ ।
ଯେତେ ରୁଣ୍ଡ ହୋଇଛନ୍ତି ନୃପତିଗଣ ।
ତୁଳାରାଶି ଅଗ୍ନି ଆମ୍ଭ ଶାୟକ ଜାଣ । ୨୫ ।
ଏ ତୁଳର ପତଙ୍ଗ ରାଜା କରିବେ କସ ।
ନିମିଷ ଅର୍ଦ୍ଧକେ ଯିବେ ସର୍ବେ ନାଶ । ୨୬ ।
ଏମନକ କହୁଁ ପଥେ ଚଳଇ ଆଟ ।
ହୋଇଲେ ଭୀଷ୍ମକରାଜା ରାଜ୍ୟ ନିକଟ । ୨୭ ।
ଦେଖିଲେକ ରବିବିମ୍ବ ଅସ୍ତକୁ ଯାଏ ।
ଶ୍ରମପାଇ ରୁହାଇଲେ ବଳ ସେଠାଏଁ । ୨୮ ।

ପ୍ରବେଶ ହୋଇଲା ଆସି ପ୍ରଦୋଷକାଳ ।
ଶଶୀକଳା ଦିଶିଲା ଗଗନ ମଣ୍ଡଳ ।୨୯।
ହରସିମନ୍ତ୍ରମୀ ହାସ୍ୟ ଦର୍ଶନ ଦଶେ ।
କାମ-ତରୁବର ନବ ଅଙ୍କୁର କି ସେ । ୩୦ ।
ଚକୋର ଚଞ୍ଚୁ-କପାଟ ଫେଡାନ କୁଞ୍ଚି ।
ଚକ୍ରବାକୀ ନିକୃନ୍ତନ କୃନ୍ତ ଉଇଁଛି । ୩୧ ।
ମାନବନ୍ତୀ ମାନ-ଗଜରାଜ ଅଙ୍କୁଶ ।
ତାରାଗଣ ପଦ୍ମବନ ବିନୋଦ ହଂସ । ୩୨ ।
ସଂଯୋଗିନୀ ରସରେଖା ରସିକ ପ୍ରାଣ ।
ବିଯୋଗିନୀ ହୃଦୟକୁ କତୁରୀ ବାଣ । ୩୩ ।
କଇରବ କଣ୍ଠଭୂଷା ମୁକୁତା ହାର ।
କମଳିନୀ ଆନନ୍ଦ ବିଖଣ୍ଡ କୁଠାର । ୩୪ ।
ଦିନମଣିକର-ତାପ ଶମକୁ ଗଲା ।
ତରୁଲତା ପଲ୍ଲବ ସରସ ପାଇଲା । ୩୫ ।
ସନ୍ଧ୍ୟାସ୍ନାନ ବସିଲେକ କେଶବ ରାମ ।
ଦେଖୁ ଦେଖୁ ଚଳି ନିଶୀ ପ୍ରଥମ ଯାମ । ୩୬ ।
ଗୋବିନ୍ଦ ବୋଲନ୍ତି ବଳଭଦ୍ରଙ୍କୁ ଚାହିଁ ।
ଏହିଠାରେ ରହ ତୁମ୍ଭେ ସୁବଳ ହୋଇ । ୩୭ ।
ଆମ୍ଭେ ଏକା ହୋଇ ରଥ ଚଢ଼ିଣ ଯିବୁ ।
ଭୀଷ୍ମଙ୍କ କଟକେ ଏହି ରଜନୀଣ ଥିବୁ । ୩୮ ।
ଯେ ଯାହା ବୋଲିବ ତାହା ଥିବଇଁ ଜାଣି ।
ପ୍ରାତଃକାଳେ ବିଭା ତ ହୋଇବେ ରୁକ୍ମିଣୀ । ୩୯ ।
ବିଭାଠାରୁ ହରି ଘେନି ଆସିବୁ ଆମ୍ଭେ ।
ଏମନ୍ତ ସମୟେ ଯାଇଁ ହୋଇବ ତୁମ୍ଭେ । ୪୦ ।
ଏତେ କହି ରଥ ନେଇ ପବନୁଁ ଖର ।
ପ୍ରବେଶ ହୋଇଲେ ସେ କଟକ ଭିତର । ୪୧ ।
ଗୋବିନ୍ଦ ବୋଇଲେ ତୁମ୍ଭେ ବ୍ରାହ୍ମଣ ଯାଅ ।
ରୁକ୍ମିଣୀ ଆଗରେ ଆମ୍ଭେ ଅଇଲୁ କହ । ୪୨ ।
ଭୀଷ୍ମଙ୍କ ଆଗରେ ଯାଇ ଗୁର ଜଣାଇ ।
କରଯୋଡ଼ି ବୋଇଲା ଶୁଣିମା ଗୋସାଇଁ । ୪୩ ।
ଜଗନ୍ନାଥ ପ୍ରଭୁ ବିଜେ କରି ଅଇଲେ ।
କଟକ ଭିତରେ ଚୋର ଆସି ରହିଲେ । ୪୪ ।

ସଙ୍ଗେ କେହି ନାହିଁ ଏକା ରଥକେ ବସି ।
କାହାକୁହିଁ ଭୟ ନାହିଁ ନଗ୍ରେଣ ପଶି । ୪୫ ।
ଚର ମୁଖୁଁ ଶୁଣିଣ ସେ ନୃପତିବର ।
ପଶିଲେକ ଯାଇଁ ଅନ୍ତଃପୁର ଭିତର । ୪୬ ।
ରାଣୀ ଘେନ ଦେଖିଣ କହିଲ ବିସ୍ତର ।
ଗୋବିନ୍ଦ ଅଇଲେ ବୋଲି କହିଲ ଗୁଭ । ୪୭ ।
ନିଷ୍ଟୟେ ସେ ରୁକ୍ମିଣୀଙ୍କ ନେଇବ ତ ଜାଣ ।
ରହିଁଥିବେ ଯେତେକ ଛନ୍ତି ନୃପତିଗଣ । ୪୮ ।
ପ୍ରତ୍ୟକ୍ଷେ ଅଟନ୍ତି ସେ ଗୋ ଧର୍ମଲାବନ୍ତ ।
କମଳଣୀ ଅଟଇ ରୁକ୍ମିଣୀ ଆମ୍ଭର । ୪୯ ।
ପୂର୍ବ ମୋ ରୁକ୍ମଣ ଦୁଷ୍ଟ-ସଙ୍ଗତ ପାଇଁ ।
ତାହାଙ୍କ ସଙ୍ଗତେ ଗୋ ବଇର ଭାଇ । ୫୦ ।
ଜଗବନ୍ଧୁ ଘେନ ଦର ନିଷ୍ଟୟ କଣ୍ଠ ।
ନାହିଁ ବୋଲି ନ ପାରିଲ ପୂର୍ବକୁ ଭର । ୫୧ ।
ଅଇଲେ ଗୋବିନ୍ଦ ଘେନ ପିଟିବ ରୁକ୍ମିଣୀ ।
ନିଷ୍ଟୟ କରଣ ଏହା ଥିବନ୍ତି ଜାଣି । ୫୨ ।
ସ୍ୱୟମ୍ବର ହନେ ଥାଇଲେ ବନମାଳୀ ।
ନମିଷ ମାତ୍ରକେ ସବୁ ନୃପତି ଦଳି । ୫୩ ।
ଏବେ ରାଜାମାନେ ଚିନ୍ତ ଦଣ୍ଡ ମାଇଣ ।
ଜୀବନ ସଂଶୟୁ ହୋଇବ ହେବ ରୁକ୍ମଣ । ୫୪ ।
ଶୁଣି ରାଣୀମାନେ ଶୋକ ହରଷ ହୋଇ ।
ବାହୁଡ଼ିଲେ ରାଜା ହେନ ବୃତ୍ତାନ୍ତ କହି । ୫୫ ।
ଅଜ୍ଞା ପାଇଗଲେ ବିପ୍ର ରୁକ୍ମିଣୀ ପୁର ।
ସଖୀଗଣ ଘେନଣ ପ୍ରେମ କରେ ବିସ୍ତର । ୫୬ ।
ନମିଷେକ ଯୁଗ ପରି ବଞ୍ଚଇ ବାଳୀ ।
ନିଷ୍ଟୟ ନଇଲେ ପ୍ରଭୁ ଶ୍ରୀବନମାଳୀ । ୫୭ ।
ତାହାଙ୍କ ଭେଟ କାହିଁ ପାଇବ ଦୂତ ।
ନିଷ୍ଟୟେ ହୋଇଣ ମୁହିଁ ହୋଇଲି ହତ । ୫୮ ।
ବ୍ରାହ୍ମଣ କମାଇ ମୋର ଅଇଲା ନାହିଁ ।
ନିଷ୍ଟେ ବନ୍ଧନ ଅବା ପାଇଲା କାହିଁ । ୫୯ ।
ଦେଖୁଁ ଦେଖୁଁ ନଶୀ ଗଣନ ପ୍ରହର ଗଲା ।
ଗୋବିନ୍ଦ ଆସିବା ଏହୁ ଆଶା ସରିଲା । ୬୦ ।

ରଜନୀ ପ୍ରଭାତେ ଶିଶୁପାଳ ବଦନ
ନ ଗ୍ଭହିଁ ମରିବି ମୋର ଏହୁ ସେ ମାନ । ୬୧ ।
ତୁମ୍ଭେମାନେ ନ ଜାଣ ମୋ ହୃଦୟ କଥା ।
ଜୀବନୁ ମରଣ ସୁଖ ଏହୁ ମୋ କଥା । ୬୨ ।
ଆଶ୍ୱାସନା କରି କହନ୍ତେ କମଳା ସଖୀ ।
ନିଶ୍ଚୟେ ଅଇଲେ କୃଷ୍ଣ ଏମନ୍ତ ଦେଖି । ୬୩ ।
ଘନ ଘନ ବାମ ବାହୁ ସ୍ଫୁରୁଛୁ ମୋର ।
ନିଶ୍ଚୟ ଅଇଲେ ତୋର ପ୍ରାଣ ଈଶ୍ୱର । ୬୪ ।
କୃଷ୍ଣଙ୍କୁ ମନରେ ବାଳୀ କରେ ଧିଆନ ।
ଏମନ୍ତ ସ୍ଫୁରିଲା ତାର ବାମ ନୟନ । ୬୫ ।
ବିସ୍ମୟ କରଇ ଏ ତ ଶୁଭ ଲକ୍ଷଣ ।
ଏସନ ସମୟେ ଦଶିଲେ ବ୍ରାହ୍ମଣ । ୬୬ ।
ସନ୍ନିଧେ ମିଳିଲା ବିପ୍ର ହରଷ ମୁଖ ।
ଦେଖି ରୁକ୍ମିଣୀର ଗଲା ଅଶେଷ ଦୁଃଖ । ୬୭ ।
ଚନ୍ଦ୍ରକୁ ଦେଖିଲା କଇରବ କାନନ ।
ପ୍ରଭାତ ସମୟେ ଯେହ୍ନେ କମଳବନ । ୬୮ ।
ଜନ୍ମ ଅନ୍ଧ ପାଇଲା କି ଲୋଚନ ଦୁଇ ।
ମୃତପିଣ୍ଡୁ ଯେସନେ କେ ଜୀବନ ପାଇ । ୬୯ ।
ବ୍ରାହ୍ମଣଙ୍କୁ ଗ୍ଭହିଁଣ ନମସ୍କାର କରି ।
କହିଲା ବିପ୍ର ବଚନ ଅଇଲେ ହରି । ୭୦ ।
ଶ୍ରବଣେ ହୋଇଲା ସୁଧା ହୁଆ ଶୀତଳ ।
ପୋଡ଼ିଲା ବନରେ ଯେହ୍ନେ ବରଷେ ଜଳ । ୭୧ ।
ଶୁଣିଣ ହରଷ ହୋଇ ସଖିସମୂହ ।
ପୁଣ ପଗ୍ଭରନ୍ତି କାହିଁ ହୋଇଲେ କହ । ୭୨ ।
ବ୍ରାହ୍ମଣ କହଇ ଯେତେ ଯେତେ ବୃତ୍ତାନ୍ତ ।
ବଳରାମ ଅଇଲେକ ହୋଇ ଯେସନ୍ତ । ୭୩ ।
ଏକା ହୋଇ ହରି ଏକା ରଥେ ଅଇଲେ ।
ଆମ୍ଭର ନଗ୍ର ଭିତରେ ଆସି ରହିଲେ । ୭୪ ।
ମୋତେ ବୋଇଲେକ ତୁମ୍ଭେ ଯାଅ ବହନ ।
ଦୁଃଖ କରୁଥିବ ଆମ୍ଭ ରୁକ୍ମିଣୀ ମନ । ୭୫ ।
ଶୁଣି ମନେ ଆନନ୍ଦ ହୋଇଲେ ରୁକ୍ମିଣୀ ।
କେ ତାହା ବଚନେ କହୁ ପଚାରେ ପୁଣି । ୭୬ ।

କଣ୍ଠ ମଣିହାର ନାନା ରତନ ଦେଲେ ।
ଦେଇ ମନେ କେବେ ସନ୍ତୋଷ ନୋହିଲେ । ୭୭ ।
କସ ଦେଇ ଛୋଡ଼ିବଈଁ ସେ ଦ୍ୱିଜବର ।
ଦଣ୍ଡ ପ୍ରଣାମ କରନ୍ତ ବପ୍ର ପାଦର । ୭୮ ।
ଅନେକ ପ୍ରକାର ଦ୍ୱିଜବରକୁ ତୋଷି ।
ପାହିଲା ରଜନୀ ଦିନମଣି ପ୍ରକାଶି । ୭୯ ।
ସ୍ୱପ ପାହିଲାଣି କଥା ହୋଇବ ଯାହା ।
ଶୁଣ ହେ ସୁଜନଜନ କହଇ ତାହା । ୮୦ ।
ଶ୍ରୀ ଜଗନ୍ନାଥଙ୍କ ଶିଶ୍ୱଚରଣ ଦୁଇ ।
ଗାଇଲା ଦୀନ କାର୍ତ୍ତିକ ଆନନ୍ଦ ହୋଇ । ୮୧ ।

———

# କପଟପାଶା

## ଭୀମା ଧୀବର

### ପଞ୍ଚମ ଛାନ୍ଦ

କୁରୁ ସଭାରେ ଦ୍ରୌପଦୀ କହନ୍ତି,
ସାବଧାନ ହୋଇ ଶୁଣ ନୃପତି ।
କମ୍ପା କହୁଛନ୍ତି ପ୍ରଭୁ ନାରାୟଣ,
ତାଙ୍କ ମହିମା ନାହିଁ କି ଶୁଣିଣ ।
ସତ୍ୟ ଯୁଗ କଥା ଗୋଟି କହିବା,
ତୁମ ମନରୁ ସଂଶୟ ଦହିବା ।
ସିଂହ ଶୃଗାଳ ଏ ବେନି ଚରିତ,
ଏକ ମନେ ଶୁଣ ହେ ନରନାଥ ।
ଏକ ବନ ମଧ୍ୟରେ ସିଂହ ଥାଇ,
ତହିଁ ପୁଷ୍କରିଣୀ ଏକ ଅଛଇ ।
ଅତି ତୃଷାର୍ତ୍ତି ହୋଇ ଶଶା ଗଲା,
ଜଳ ଘାଟରେ ସିଂହକୁ ଭେଟିଲା ।
ଯାହା ଠାରୁ ଯେ ବଳିଷ୍ଠାର ହୋଇ,
ତାକୁ ଦେଖିଲେ ପ୍ରାଣେ ଡରୁଥାଇ ।
ସିଂହ ନିକଟେ ଶଶାକୁ ଦେଖିଲା,
ତାକୁ ଭକ୍ଷିବ ବୋଲି ଗୋଡ଼ାଇଲା ।
ଶଶା ପଳାଇ ପବନହୁଁ ଖରେ,
ଭୟେ ପଶିଲା ଶୃଗାଳ ବିଳରେ ।
ତହିଁ ମଧ୍ୟରେ ଦେଖିଲା ଶୃଗାଳ,
ଶଶା ପାଞ୍ଚିଲା ପୂରିଲା ମୋ କାଳ ।
ସିଂହ ଭୟରେ ପଶିଲି ବିଳରେ,
ଏବେ ପଡ଼ିଲି ଶୃଗାଳ-ମୁଖରେ ।
ମୋର ନିଶ୍ଚୟ ହୋଇଲା ମରଣ,
ଶଶା ଡାକିଲା ରଖ ନାରାୟଣ ।

ତୁମେ ନ ରଖିଲେ ହେବି ଅନାଥ,
ଏଥି ନାହିଁ ପ୍ରଭୁ ଆଉ ଆରତ ।
ଶଶା ଆରତ ଗୋବନ୍ଧ ଶୁଣିଲେ,
ରକ୍ଷା କଲ୍ ବୋଲି ଆଜ ବୋଇଲେ ।
ଶଶା କଣ୍ଠେ ବଜେ କଲେ ଗୋବନ୍ଧ,
ତାକୁ ଦଶିଲା ସବୁ କଥା ଛନ୍ଦ ।
ଯନ୍ତ୍ର ଶୃଗାଳ ଦେଖିଲା ଶଶାକୁ,
ବଡ଼ ହରଷ ହୋଇଲା ମନକୁ ।
ତାକୁ ଖାଇବା କଥା ମୂଳ କଲା,
ତୁରେ କାହିଁକ ଅଇଲ୍ ବୋଇଲା ।
ଶଶା ବୋଲେ ଶୁଣ ଦେବ ଉତ୍ତର,
ସର୍ବ ଜନ୍ତୁ ପେଷିଲେ ତୁମ୍ଭ ପୁର ।
ମୋତେ ବୋଇଲେ ଶଶା ବେଗେ ଯିବୁ,
ଗର୍ତ୍ତ ମଧ୍ୟରୁ ଶୃଗାଳ ଆଣିବୁ ।
ସେ ଯେ ନୃପତି ହୋଇବେ ବନରେ,
ସର୍ବେ ସେବିବୁ ତାହାଙ୍କ ପଦ୍ମରେ ।
ସର୍ବ ଜନ୍ତୁଙ୍କ ପରେ ହେବେ ରଜା,
ଆମେ ହୋଇବା ତାହାଙ୍କ ପରଜା ।
ତେଣୁ କରି ଅଇଲି ତୁମ୍ଭ ପାଶ,
ବନେ ନୃପତି ହେବ ବେଗେ ଆସ ।
ଶୁଣି ଶୃଗାଳ ହରଷ ହୋଇଲା,
ଶଶା ମୁଖକୁ ଅନାଇ ବୋଇଲା ।
ଯେତେବେଳେ ରଜା ପଣେ ବସିବି,
ତୋତେ ମନ୍ତ୍ରୀପଣେ ଶାଢ଼ୀ ବାନ୍ଧିବି ।
ଚାଲ ଗର୍ତ୍ତରୁ ହୁଅସି ବାହାର,
ଶଶା ବୋଲେ ଦେବ ହୁଅ ଆଗର ।
ତୁମ୍ଭେ ନୃପତି-ପଣକୁ ଭାଜନ,
ଗୁର ସେବକ କି ଆଗେ ଗମନ ।
ତୁମ୍ଭେ ବଜେକର ଦେବ ଆଗରେ,
ମୁହିଁ ଯାଉଛି ତୁମ୍ଭର ପଛରେ ।
ଶଶା କପଟ ଜାଣି ନ ପାରିଲା,
ଗର୍ତ୍ତ ମଧ୍ୟରୁ ବାହାର ହୋଇଲା ।

ସିଂହ ଜଗି ବସିଥିଲା ଦ୍ୱାରକୁ,
ଶୀଘ୍ର ମାଡ଼ି ବସିଲା ଶୃଗାଳକୁ ।
ଶଶୀ ଗୋବିନ୍ଦ ଆଶ୍ରୟ ନେବାରୁ,
ପ୍ରାଣ ପାଇଲା ଦୁହିଁଙ୍କ ମୁଖରୁ ।
ତୁମ୍ଭେ ହେବ ନନ୍ଦାକର ନୃପତି,
ତାଙ୍କୁ ଚିନ୍ତିଲେ ନ ଥାଇ ଦୁର୍ଗତି ।
ଶୁଣି ଦୁର୍ଯ୍ୟୋଧନ ବେଗେ କହିଲା,
ଦୁଃଶାସନ ମୁଖ ଚାହିଁ ବୋଇଲା ।
"ଫେଡ଼ ଦ୍ରୌପଦୀ-ଅଙ୍ଗରୁ ବସନ",
"ସତୀ ବୋଲେ ରହ ରହ ବଚନ ।
ବସି ଅଛନ୍ତି ମୋ ପଞ୍ଚ ଭର୍ତ୍ତାଏ,
ଏତେବେଳେ ମୁଁ କହିବି କଥାଏ ।"
ଦେଖି ଚାହିଁ ଯୁଧିଷ୍ଠିର-ବଦନ,
ଅତି ଆରତେ କରନ୍ତି ବେଦନ ।
ସତୀ ଯୁଧିଷ୍ଠି ଦେବଙ୍କ ଚରଣ,
ଧୀମା ଧ୍ୟାନ ନିରନ୍ତରେ ଶରଣ ।

———

୩

# ତୁଳସୀ ମହିମା

## କାର୍ତ୍ତିକ ପୁରାଣ (ଅଷ୍ଟାଦଶ ଅଧ୍ୟାୟ)

## ମହାଦେବ ଦାସ

ଶୁଣ ରାଜନ ଚୂଡ଼ାମଣି । ବିଷ୍ଣୁ ଦୂତଙ୍କ ବାକ୍ୟ ଶୁଣି ॥
ସେ ବିପ୍ରବର ଧର୍ମଦତ୍ତ । ପୁଣି ଭୂମିରେ ପ୍ରଣମିତ ॥
ଦୁଟି କପୋଳେ କର ଦେଇ । ବୋଲଇ ଶୁଣିମା ଗୋସାଇଁ ॥
ପ୍ରାଣୀ ସୁଗତି ଅର୍ଥେ ବିହି । ଷଡ଼ ପ୍ରକାରେ ଧର୍ମ କହି । ॥
ଯଜ୍ଞାଦି ଦାନ ତୀର୍ଥ ବ୍ରତ । ତପସ୍ୟା ଚାନ୍ଦ୍ରାୟଣ ମତ ॥
ଏ ବିଧି ଧର୍ମ ଷଡ଼ଗୁଣେ । ଯେ କରେ ସାତ୍ତ୍ୱିକ ଲକ୍ଷଣେ ॥
ବହୁତ ଦିନେ ସିଦ୍ଧ ହୋଇ । ଅନ୍ତେ ଅଚ୍ୟୁତ ପାଶେ ଯାଇ ॥
ତୁଳସୀଦଳ ପ୍ରାପ୍ତ ମାତ୍ରେ । କଳୁଷ ନ ରହଇ ଗାତ୍ରେ ॥
ଏ କଥା ଦେଖିଲି ପ୍ରତ୍ୟକ୍ଷ । କଳହା ନାମେ ସ୍ତ୍ରୀର ମୋକ୍ଷ ॥
ଏ ବଡ଼ ଦୁର୍ଲ୍ଲଭ ମହିମା । ତୁମ୍ଭେ ସର୍ବଙ୍କ ପୁଣ୍ୟ ଆତ୍ମା ॥
ଆଉ କି ଦେଖିଅଛ କାହିଁ । ତୁଳସୀ ଯେକ ତପ ଦାହି ॥
ସଂସାରୁ ଯାଇଛନ୍ତି ତରି । ତୁଳସୀ ବୃକ୍ଷ ସେବା କରି ॥
ଏ କଥା ଦେଖିଥିଲେ କହି । ମୋର ସଂଶୟ ମନୁ ଦହି ॥
ବିପ୍ର ବଚନେ ବିଷ୍ଣୁ ଦୂତେ । ବୋଲନ୍ତି ଶୁଣ ଏକ ଚିତ୍ତେ ॥
ପୂର୍ବେ ଯେ କାଞ୍ଚି ନଗରପତି । ନାମ ଚୋଳ ଚକ୍ରବର୍ତ୍ତୀ ॥
ବିଷ୍ଣୁ-ଭକତପଣେ ରାଜା । ଧର୍ମେ ପାଳଇ ଜନପ୍ରଜା ॥
ଯାବତ ଅବନଇ ବଞ୍ଚ । ତାବତ ଧର୍ମେ ଥାଇ ଚିତ୍ତ ॥
ଧର୍ମେ ସକଳ ଜନେ ପ୍ରୀତି । ଧର୍ମ ସଞ୍ଚଇ ସର୍ବ କୀର୍ତ୍ତି ॥
ଆତ୍ମାର କାରଣ ଜମନ୍ତ୍ରେ । ବିଷ୍ଣୁ ସେବଇ ଶୁଦ୍ଧ ଚିତ୍ତେ ॥
ପୂର୍ବେ ସମୁଦ୍ରତୀରେ ରାଜା । ନିତ୍ୟେ କରନ୍ତି ବିଷ୍ଣୁ ପୂଜା ॥
ପାଷାଣେ ଦେଉଳ ତୋଳାଇ । ପାରୁଶେ ପୋଖରୀ ଖୋଳାଇ ॥
ବିବିଧ ତରୁ-ଫଳପୁଷ୍ପେ । ଯତନେ ରୋପି ଚାରିପାଶେ ॥
ଗଢ଼ାଇ ସୁବର୍ଣ୍ଣ ପ୍ରତିମା । ଅନନ୍ତ ପୁରୁଷ ଉତ୍ତମା ॥
ପ୍ରସାଦ ମଧ୍ୟେ ତାଙ୍କୁ ସ୍ଥାପି । ଆଗେ ପୂଜଇ ନାମ ଜପି ॥

ନବୀନ ରତ୍ନ ହୀରା ନୀଳା । ମାଣିକ୍ୟ ମୁକୁତା ପୋହଳା ॥
ବୈଦୂର୍ଯ୍ୟ ପଦ୍ମରାଗ ମଣି । ମରକତ ରତ୍ନ ଆଦିଆଣି ॥
ମଣ୍ଡଣି କରି ବିଷ୍ଣୁ ଅଙ୍ଗେ । ବସ୍ତ୍ର କୁସୁମ ନାନା ରଙ୍ଗେ ॥
ବିବିଧ ଉପହାର ବାଢ଼ି । ପୂଜା କରଇ ସ୍ତୁତି ପଢ଼ି ॥
ଗନ୍ଧ ଚନ୍ଦନ-ଧୂପ-ଦୀପେ । ସଂଯୋଗୀ ଶ୍ରୀହରି ସମୀପେ ॥
ପୂଜା କରଇ ଶୁଦ୍ଧମନେ । ଆଜ୍ଞା ମାଗଇ ପ୍ରଣିପାତେ ॥
ହେ ପ୍ରଭୁ ପରମ ଈଶ୍ୱର । ମୋର ପ୍ରଜାଙ୍କୁ ସୁଖୀ କର ॥
ପ୍ରକାଶ ହୁଅ ସର୍ବ ହୃଦେ । ମୋ ମନ ରହୁ ତୁମ୍ଭ ପାଦେ ॥
ଏମନ୍ତ ବୋଲି ଆଜ୍ଞା ମାଗେ । ଜଗତଜନ ଅନୁରାଗେ ॥
ଏମନ୍ତେ କେତେକାଳ ଗଲା । ଦିନେ ଏମନ୍ତ କୃତ୍ୟ ହେଲା ॥
ନୃପତି ବିଷ୍ଣୁ ପୂଜା କାଳେ । ଏକ ବ୍ରାହ୍ମଣ ଆସି ମିଳେ ॥
ନାମ ତାହାର ବିଷ୍ଣୁ ଦାସ । ସେହି ନଗ୍ରରେ ତା'ର ବାସ ॥
ଦଶମୀ ତିଥି ନିଶି ଶେଷେ । ବିଷ୍ଣୁଙ୍କ ଦରଶନ ଆଶେ ॥
ସ୍ନାହାନ ସାରି ପ୍ରାତଃ କାଳେ । ପ୍ରବେଶ ହେଲା ଦେବ ଆଳେ ॥
ହସ୍ତେ ତା ତୁଳସୀ ମଞ୍ଜରୀ । ବିଶେଷେ ପଦ୍ମ ଦ୍ରୋଣେ ଭରି ॥
ଦେଉଳ ଭିତରେ ପଶିଲା । ମଣ୍ଡିଲା ବିଷ୍ଣୁ ଅଙ୍ଗେ ନେଇ ॥
ତୁଳସୀ ଦଳେ ବିଷ୍ଣୁ ବେଶ । ତାହାଙ୍କୁ ହୋଇଲା ଅଦୃଶ୍ୟ ॥
ତା ଦେଖି କୋପେ ନୃପବର । ବିପ୍ରଙ୍କୁ କରଇ ଧିକ୍‌କାର ॥
ବୋଇଲା ଧିକ୍ ତୋର ବୁଦ୍ଧି । ତୁ କିସ ଜାଣୁ ପୂଜା-ବିଧି ॥
ସ୍ୱଭାବେ ଦୁଃଖୀ ଅକିଞ୍ଚନ । ଦରିଦ୍ରପଣେ ଜ୍ଞାନହୀନ ॥
ତୋତେ ମିଳିବ ଅବା କିସ । ବିଷ୍ଣୁଙ୍କୁ କରିବୁ ସନ୍ତୋଷ ॥
ଦେଖ ମୋହର ପୂଜା-ବିଧି । ରତ୍ନ କାଞ୍ଚନେ ସର୍ବସିଦ୍ଧି ॥
ମଣ୍ଡିଛି ବିଷ୍ଣୁ-କଳେବର । କେମନ୍ତେ ଦିଶନ୍ତି ସୁନ୍ଦର ॥
ତୁ ଆସି ବେଶ ଭ୍ରାନ୍ତ କଲୁ । ତୁଳସୀ ଦଳେ ଉହାଡିଲୁ ॥
ଏଣୁ ମୋ ମନ ମହାତାପ । ନ ଦେଖି ବିଷ୍ଣୁ ନିଜ ରୂପ ॥
ତୁ ଯେ ବ୍ରାହ୍ମଣ ବୁଦ୍ଧି ନଷ୍ଟ । କେବଳ ବର୍ଣ୍ଣ ମଧ୍ୟେ ଶ୍ରେଷ୍ଠ ॥
ତେଣୁ ସହିଲି ତୋର ଦୋଷ । ଆଉ ବୋଲିବା ଅବା କିସ ॥
ରାଜା ବଚନ ବିପ୍ର ଶୁଣି । ସଧୀରେ କହୁଅଛି ବାଣୀ ॥
ହେ ନୃପ ନ କରିବା କୋପ । ମୋଠାରୁ ଶୁଣିବା ସ୍ୱରୂପ ॥
ଉତ୍ତମ ଋଷିଙ୍କ ବଚନେ । ମୁଁ ଶୁଣିଅଛି ପୂର୍ବ ଦିନେ ॥
ବିଷ୍ଣୁ ପୂଜା ନିମନ୍ତେ ଦ୍ରବ୍ୟ । ବହୁ ବିଧାନେ ଉଆଇବ ॥
ପୃଥିବୀ ତୁଲେ ପାଦ କରି । ବ୍ରହ୍ମା ସମାନେ ଶକ୍ତ ଧରି ॥

ଦ୍ରବ୍ୟ ସମ୍ଭବ ଶୁଦ୍ଧଚରେ । ସାତସମୁଦ୍ର ଜଳ ଯେତେ ॥
ଅର୍ଘ୍ୟ ନିମନ୍ତେ ଦେଲେ ଯାର । ମେରୁ ସମାନେ ଅଲଙ୍କାର ॥
ସପତ ନିଧି ରତ୍ନମଣି । ମଣ୍ଡିବ ବିଷ୍ଣୁ ଅଙ୍ଗେ ଆଣି ॥
ପାରିଜାତକ ଆଦି ପୁଷ୍ପେ । ମଳୟ ଚନ୍ଦନ ସୁବାସେ ॥
ଜଗତେ ଯେତେ ସ୍ୱାଦୁଫଳ । ପୂଜାରେ ବାଢ଼ିବ ସକଳ ॥
ଷୋଡ଼ଶଭାବେ ପୂଜା ବିଧି । ନିଗମ ମନ୍ତ୍ରେ କରି ସିଦ୍ଧି ॥
ବ୍ରହ୍ମମୁନିଙ୍କ ଉପଦେଶେ । ବିଷ୍ଣୁଙ୍କ ପୂଜିବ ହରଷେ ॥
ତେଣେ ହୋଇବ ଯେତେ ଧର୍ମ । ତୁଳସୀଦଳେ ନୁହେଁ ସମ ॥
ତୁଳସୀ କୋମଳ ମଞ୍ଜରୀ । ବେନି ହସ୍ତରେ ଥିବ ଧରି ॥
ଯେ ତାହା ଦେବ ବିଷ୍ଣୁ ଶିରେ । ସେ ଧର୍ମ କହିଲେ ନ ସରେ ॥
ବିଷ୍ଣୁ ଶ୍ରୀମୁଖେ ଯନ୍ତ କହି । ବିଧାତା ସର୍ବଶାସ୍ତ୍ରେ ଲିହି ॥
ଈଶ୍ୱର ଆଦି ମୁନିଗଣେ । ପ୍ରକାଶ କଲେ ଜଣେ ଜଣେ ॥
ତେଣୁ ପ୍ରସିଦ୍ଧ ଏ ତୁଳସୀ । ଗୋବିନ୍ଦ ପୂଜାରେ ପ୍ରଶଂସି ॥
କେବେ ଏ କଥା ନୁହେ ମିଛ । ତୁ ରାଜା ଗୁରୁଦ୍ୱାରେ ପୁଚ୍ଛ ॥
ଏମନ୍ତ ବ୍ରାହ୍ମଣ ବଚନେ । ରାଜା କହଇ କୋପମନେ ॥
ତୁ ବିପ୍ର ନିଷ୍ଠେ ବଡ଼ ଦୁଷ୍ଟ । ମୋତେ କରାଉ ଆସି ରୁଷ୍ଟ ॥
ଏ ମୋର ଧର୍ମ କୀର୍ତ୍ତି ଯେତେ । ପ୍ରକାଶ ହେଉଛି ଜଗତେ ॥
କେ ଏହା ସଂଖ୍ୟା କରି ପାରି । ତୁ ବିପ୍ର କାହିଁ ମୋର ସରି ॥
ତୁଳସୀ ବୃକ୍ଷ କେତେ ରୋପି । ଆପେ ବୋଲାଉଅଛୁ ତପୀ ॥
ଆପଣା ଗୁଣ କହୁ ବଳି । ମୋର ଅଶେଷ ଧର୍ମ ଟାଳି ॥
ଏ କଥା ପୁଚ୍ଛି ଣ ବୃଟେନ୍ଦ୍ରା - । ଚାଲ ଉତ୍ତମ ସ୍ଥାନେ ଯିବା ॥
ମୋ ଗୁରୁ ମୁଦ୍ଗଲ ଋଷି । ସର୍ବଦା ଗୟା ତୀର୍ଥବାସୀ ॥
ତାଙ୍କ ସଙ୍ଗତେ ବିପ୍ରଗଣେ । ଅଛନ୍ତି ବୈଷ୍ଣବ ଲକ୍ଷଣେ ॥
ଯାଗ ସମ୍ବାଦ ଧର୍ମବାଟେ । ଅଛନ୍ତି ଗୟାନଦୀ-ତଟେ ॥
ସେଠାରେ ଧର୍ମ କର୍ମ ବିଧି । ପ୍ରଚ୍ଛନ୍ନ ହେଉଅଛି ସିଦ୍ଧି ॥
ତାଙ୍କ ନିକଟେ ଚାଲ ଯିବା । ଏ କଥା ତାଙ୍କୁ ପଚାରିବା ॥
ତୁଳସୀ ସେବା ଧର୍ମ ଫଳ । ଆଉ ଯାବତ କରି ଠୁଳ ॥
କେ ଏଥେ ଗୁରୁ ଲଘୁ ଅବା । ବିପ୍ରଗୋଷ୍ଠୀରେ ପଚାରିବା ॥
ଏମନ୍ତ ବୋଲି ନୃପମଣି । ବିପ୍ରଙ୍କୁ ସଙ୍ଗେ ସଙ୍ଗେ ଆଣି ॥
ସେଦିନ ନିଜ ପୁରେ ରହି । ପ୍ରଭାତୁ ଗଲେ ପଥ ବାହି ॥
ତୃତୀୟ ଦିନ ଅବଶେଷେ । ମିଳିଲେ ଗଦାଧର ଦେଶେ ॥
ଦେଖିଲେ ଗୟାନଦୀ ତୀରେ । ଦକ୍ଷିଣ କୂଳେ ବନ ଘୋରେ ॥

ବହୁତ ଶିଷ୍ୟଗଣ ତୁଲେ | ଯଜ୍ଞ କରନ୍ତି ମୁଦୁଗଲେ ||
ବହୁତ ସମ୍ଭାର ଭିଆଇ | ଜଗତେ ଅନ୍ନଦାନ ଦେଇ ||
ବିବିଧ ବର୍ଣ୍ଣେ ମନୋହର | ନିର୍ମାଣ ଧର୍ମଶାଳା ପୁର ||
ଯତି ବୈଷ୍ଣବବୃନ୍ଦ ମିଳି | ତୁଳସୀ ବନ ପ୍ରତିପାଳି ||
ଭିଆଇ ନାନା ଉପହାର | ବିଷ୍ଣୁ ସେବାରେ ତତପର ||
ତୁଳା ମକର ମେଷ ମାସ | ଶ୍ରୀ ଏକାଦଶୀ ଉପବାସ ||
ଏ ଧର୍ମମାନ କହୁ ମୁଖେ | ଦିନ ବଞ୍ଚନ୍ତି ଅତି ସୁଖେ ||
ତା ଦେଖି ଚୋଳ ଚକ୍ରବର୍ତ୍ତୀ | ଆନନ୍ଦେ ଗୃହେଁ ଚଉକତି ||
ସେ ବିଷ୍ଣୁ ଦାସ ଦ୍ୱିଜବର | ମନେ ଚିନ୍ତଇ ଚକ୍ରଧର ||
ଆନନ୍ଦେ ଯଜ୍ଞସ୍ଥାନ ଦେଖି | ରାଜା ସନ୍ତତେ ଚିତ୍ତେ ସୁଖୀ ||
ସୁମର ଗୁରୁ ଉପଦେଶ | କହଇ ମହାଦେବ ଦାସ ||
ସକଳ ଲୋକେ ଚିନ୍ତ ହର | ଭବ-ସାଗରୁ ଯିବ ତର ||

ଇତି ଶ୍ରୀ ପଦ୍ମପୁରାଣେ ଉତ୍ତରଖଣ୍ଡେ କାର୍ତ୍ତିକମହାତ୍ମ୍ୟେ
ଚୋଳରାଜା ବିଷ୍ଣୁ ଦାସ ସମ୍ବାଦେ ନାମ ଅଷ୍ଟାଦଶୋଧ୍ୟାୟ ||

———

# ଗ୍ରୀଷ୍ମ ବର୍ଣ୍ଣନା

## ଦୀନକୃଷ୍ଣ ଦାସ

କ୍ରମେ ମଧୁ ଶେଷ ହୁଅନ୍ତେ ପ୍ରବେଶ ହୋଇଲା ଗ୍ରୀଷ୍ମ ସମୟ
କରମାଳ କର ମହା ଖରତର କମଳ କୁମାର ପରାୟ ।
ସୁଜନେ । କି କହିବା ମହା ଆତପ ।
କରାଇଲା ନୃତ୍ୟ ପଥିକ ପଦକୁ ସଂଗ୍ରାମଭୂମି ଅଶ୍ୱବତ ।

କୁଶଳ ନର୍ତ୍ତକୀ ଭ୍ରମରୀ ପରାଏ ଭ୍ରମିଲେ ବାତ ଚକ୍ରମାନେ
କୁଟୁମ୍ବି ଧନଜନ-ମନପରାଏ ସନ୍ତାପୀ ହେଲେ ଏକାଦିନେ ।
ସୁଜନେ । କୃଶ ହୋଇଲେ ନଦୀଜଳ ।
କାନ୍ତ ଧନରସ ବିହୀନେ ଯେମନ୍ତ ଦିଶନ୍ତି ବିରହିଣୀ କୁଳ ।

କୁରଙ୍ଗ ନୟନା ନୟନ ତରଙ୍ଗ ବଳି ମୃଗତୃଷ୍ଣା ଦିଶିଲେ
କାଳମେଘ କୋଳେ ବିଜୁଳି ପରାଏ ବନେ ବନେ ଅଗ୍ନି ହସିଲେ ।
ସୁଜନେ । କାହିଁ ତୃଣରାଜ ଫୁଟନ୍ତି ।
କାମିନୀ-ସୁରତ କାଳ ମନମଥ ଶବଦ ପରାଏ ଘଟନ୍ତି ।

କୃପଣ ସାମନ୍ତ ସେବକ ପରାଏ ତାପେ ଜର୍ଜର ସୂର୍ଯ୍ୟକାନ୍ତ
କାନ୍ତ ରହିତ କାନ୍ତାପ୍ରାଏ ହୋଇଲେ ସରସୀମାନେ ବେଶଅନ୍ତ ।
ସୁଜନେ । କେବଳ ଭକ୍ତ ରଙ୍କ ପାଏ ।
କଚ୍ଛପ ମତ୍ସ୍ୟ ମଣ୍ଡୂକମାନଙ୍କର ଦୁର୍ବଳ ହୋଇଗଲା କାଏ ।

କମଳ ବିରହେ କଣବର ରହେ ମହାଗହନ ଆଶ୍ରେ କରି
କର୍ଦ୍ଦମରେ ପଡ଼ି ଫେନ ମୁଖେ ରତ ଗୁଣ୍ଡନ୍ତି ଗନ୍ଧର୍ବ ଦଇଶ ।
ସୁଜନେ । କୁଞ୍ଜ ଭିତରେ ପକ୍ଷିମାନେ
କେବଳ ଯୋଗୀ ଧ୍ୟାନ କଲା ପରାଏ ନିଷ୍ଠେ ରହିଲେ ମଉନେ ।

କରିବାକୁ ପ୍ରାଣ ରକ୍ଷା ନିଜ ପ୍ରାଣ ପରକୁ ଦେଲପ୍ରାୟ ହୋଇ
କୋକ ମୃଗ ଯାଏଁ ଭୟକୁ ପକାଇ ସିଂହ ଗୁମ୍ଫାରେ ହେଲେ ଶାନ୍ତି ।
କୋବିଦେ । କୁଣ୍ଡଳୀକୁଳ ଏହି ରୂପେ
କଳାପୀ କଳାପ ତଳରେ ରହିଲେ ପାଇ ବିପଣ୍ଡିକ ଆତପେ ।

କାହିଁଗଲା ବନଲତା ଶୋଭାବନ କାନ୍ତାହୃତ କାନ୍ତା ପରାଏ
କରିଥିଲା ଯିନା ବସନ୍ତ ତାହାକୁ ନବ ପଲ୍ଲବେ ତୋଷମସ୍ତେ
କୋବିଦେ । କାଳେ ସେ ଅନ୍ତର ହୋଇଲା ।
କନ୍ଦର୍ପ ଦର୍ପ ରହିତ ହୋଇ ସଖା ଅଭାବେ ହୃଦରେ ଶୋଇଲା ।

କୁଞ୍ଜେ କୁଞ୍ଜେ ବସି ଝିଙ୍କାରି ଡାକଲେ କାମକେଳି ବାଟ ପଡ଼ିଲା
କୁସୁମ କାଣ୍ଡ ମଣ୍ଡିହୋଇ ଅର୍ଜ୍ଜୁନ ବିୟୋଗି ହୃଦୟ ତାଡ଼ିଲା ।
କୋବିଦେ । କେଉଁ ପଥିକ ତାପବଳେ
କରନ୍ତେ ଗମନ ଶ୍ରମ ପାଇ ଯାଏଁ ବସନ୍ତ ବନ୍ଧୁ-ପାଦ-ତଳେ ।

କୃପଣ ଧନ ସଞ୍ଚିଲା ପ୍ରାୟେ ମଧୁ ସଞ୍ଚିଲେ ମଧୁକରମାନେ
କେ ଜଳଛତ୍ର ପରିଷମାନ ଦେଲେ ବ୍ରାହ୍ମଣ କରେ ସ୍ଥାନେ ସ୍ଥାନେ
କୋବିଦେ । କେଉଁ ଈଶ୍ୱର ଅନୁଗ୍ରହୀ
କର୍ପୂର ଚନ୍ଦନ ଅଙ୍ଗେ ବୋଳି ହୋଇ ଧାରାମଣ୍ଡିତ ଗୃହେ ରହି ।

କେ ଗୀତ କବିତ୍ୱ ବେଣୁ ବୀଣା ନୃତ୍ୟରଙ୍ଗେ ଦିନମାନ ହରନ୍ତି
କେ ବସି ଏକାନ୍ତେ କାମିନୀ ସଙ୍ଗତେ ଚନ୍ଦନ ପିଚକା ମାରନ୍ତି
କୋବିଦେ । କେ କରେ ନଉକା ବିହାର
କେ ସ୍ୱେଦ ଭୟରେ କରତଳୁ ତାଳବୃନ୍ତ ନ କରଇ ବାହାର ।

କେ ଦିନ ଶେଷରେ ଦିନକର କରେ ତାପ ପାଇ ଜଳେ ବୁଡ଼ନ୍ତି
କେ ମହା ବିକଳେ ବସି ଶୀତ ସ୍ଥଳେ ଶୀତଳ ପବନ ଲୋଡ଼ନ୍ତି,
କୋବିଦେ । କେତେ କହିବି ଏ ପ୍ରସଙ୍ଗ
କେବଳ ଶୀତକାରକ ଦ୍ରବ୍ୟ ବିନୁ ଆନ ଲୋଡ଼ିଲା ନାହିଁ ଅଙ୍ଗ ।

କାନ୍ତ ପ୍ରବଳ ଗ୍ରୀଷ୍ମରେ ବିକଳ ହୋଇ ସକଳ ଗୋପାଙ୍ଗନା
କରିବେ ବୋଲି ଜଳକ୍ରୀଡ଼ା ଚଞ୍ଚଳ ହୋଇଲେ ଚପଳ-ଲୋଚନା
କୋବିଦେ । କମଳା କୁଟିଳ କୁନ୍ତଳା
କାମ-କେଳି କଳା-କୁଶଳା ସୁଶୀଳା କେତକୀ ଗୋପୀ ପ୍ରେମଶୀଳା ।

କରି କୁମ୍ଭସ୍ତନା କୋକଳ ବଚନା କୁନ୍ଦକଳି ସୁରୂଦଶନା
କୁଟିଳ ଦଶନା ପ୍ରସନ୍ନ ବଦନା ଶ୍ରୀକୃଷ୍ଣ-ଚନ୍ଦ୍ର-ସ୍ନେହ ଘେନା
କୋବଦେ । କୂପକ ନତମ୍ବ ଶୋଭନା ।
କେଶଗ୍ର ମଧମା କଉତୁକ ସୀମା କୁଞ୍ଜବନ କେଳି-ଲୋଭନା ।

କଳା କର ହାସୀ କମଳସୁବାସୀ କ୍ରୀଡ଼ାମାନସ କଳହଂସୀ
କୃଷ୍ଣ ମନ ମୀନ-ଆକର୍ଷ-ବଡ଼ଶୀ-କନ୍ଦର୍ପ-ଦର୍ପତମ-ଶଶୀ
କୋବଦେ । କାମ ତରଙ୍ଗିଣୀ ତରଣୀ
କରନ୍ତେ ଗମନ ଅତି ଶୋଭାବନ ଦିଶଇ ଧରଣୀ-ସରଣୀ ।

କଳରବ କରେ କନକ କଙ୍କିଣୀ ବାଜଇ ବାଜେଣୀ ନୂପୁର
କାମ ପଦ୍ଧଣ୍ଡ ମଣାଇ ଦେଲା ପ୍ରାୟେ ଶୁଭଇ ଅତ୍ୟନ୍ତ ସୁସ୍ୱର
କୋବଦେ । କମଳ ଚଞ୍ଚଳ ପରାୟେ
କଳେୟ ପନ୍ତ ପାଦ ବିକାଶନ୍ତ ପଦ ପଦକେ ସୁଖମୟେ ।

କାଳନ୍ଦୀ କୂଳରେ ପ୍ରବେଶ ହୋଇଲେ ସକଳ ବରଜ ବାଳିକା
କଲେ ଅବଲୋକ କଳାରେ ନନ୍ଦ ଛୁ ଦଳଇ କଜ୍ଜ୍ୱଳ କାଳିକା
କାମିନୀ-କଟାକ୍ଷ ପରାୟେ ତରଙ୍ଗ
କବଗ୍ର ପରାୟେ ମହା ମନୋହର କୁସୁମମାନଙ୍କରେ ସଙ୍ଗ ।

କଳହଂସକୁଳ ସ୍ୱନ କରୁଛନ୍ତ ହଂସକ ନିଃସ୍ୱନ ପରାୟେ
କାନ୍ତା-ଉଚ କୁଚ ପ୍ରାୟେ ବସିଛନ୍ତ କୋକ ମିଥୁନ ଏକଠାୟେ
କେବଳ । ବ୍ରହ୍ମଧ୍ୟାନ ଯୋଗୀ ପରାୟେ
କଳେବର ସ୍ଥିର କରି ବକମାନେ ମୀନକୁ କରିଛନ୍ତ ଲୟେ ।

କମଳେ କମଳବଦନୀ ପଶନ୍ତେ କମଳେ ହୋଇଲେ ଚଞ୍ଚଳ,
କୁବଳୟ ଆଦ କହ୍ଲାର ସହତେ କେ ତହିଁ ନୋହଲେ ନିଶ୍ଚଳ ।
କେବଳ । ଯେ ଯାହାକୁ ଗୁଣେ ବଳଇ
କ କ କରି ପାଶେ ଦେଖିଲେ ତାକୁ ସେ ଅଧୈର୍ଯ୍ୟ ହୋଇ ତରଳଇ ।

କମନୀୟ ମୁଖ ସୁନେତ୍ର ସୁନଖ ଶୋଭାକୁ ସମ ନୋହିବାରୁ
କର୍ମ୍ମିଳ ସବୁରି ଶରୀର ସୁମରି ମରିବା ଭଲ ଲାଜଠାରୁ
କାଦମ୍ବ । କୂଳ ପାଶରେ ନ ରହଲେ
କରିବାରୁ ସ୍ୱୈର ଗମନ ସୁରୁଚି ମନରେ ଉପୁକୁ ବହଲେ ।

କନକଲତା ନୀଳମଣି ମୂଳରେ ପବନେ ଡକାଇ ପଶ୍ୱ ଏ
କେହୁ କା'କୁ ପାଣି-ପାଣିରେ ପୂଗ୍ୱଇ ଆନନକୁ ମାର ପଳାଏ
କେ ଜଳ-କରଟ ପଶ୍ୱଏ ବୁଡ଼ଇ
କାହିଁ ପିବୁ ବୋଲି କଣ କେ ପାଣିରେ ପାଣି ଘେନକର ଲେଡ଼ଇ ।

କରେ କର ଦେଇ ଚକ୍ରଦାଳ ହୋଇ କମନ୍ତୁ କମଳ ତୋଳନ୍ତି
କେ ଧର କମଳେ କମଳ କୁସୁମ ତୋଳି କାହା କୁଚେ ଡାଳନ୍ତି
କେ ବୋଲେ, କୁଚପନ୍ତ ସଖି ଶଙ୍କର
କର ଏହାକୁ ଜଳଶାୟୀ ସମସ୍ତେ ହେଲାଁ ଏହାଙ୍କ କଙ୍କର ।

କି ବର ମାଗିବ ମାଗିଆଅ ଏବେ ଯେ ଯାହାର ଦୁଃଖ ଜଣାଇ
କେ ବୋଲେ କୃଷ୍ଣଙ୍କୁ ଏକାଳରେ ଯେବେ ଦେବେ ଆମ୍ଭପାଶେ ଅଣାଇଁ
କରବା । ତାଙ୍କୁ ଘେନି ଜଳ ବିହାର
କହୁଁ କହୁଁ ଏହା କମଳ ନୟନ ବୃନ୍ଦାବନୁଁ ହେଲେ ବାହାର ।

କଲେ ବିଚ୍ଚର ଗୋପୀକା ଯମୁନାରେ କରୁଅଛନ୍ତି ଜଳକ୍ରୀଡ଼ା
କର ଅନ୍ତର ଅଙ୍ଗବାସ ସମସ୍ତେ ଛାଡ଼ି ଅଛନ୍ତି ମନୁ ବ୍ରୀଡ଼ା
କରବା । ସଭୁର ବସନ ହରଣ
କଦମ୍ବ ବୃକ୍ଷରେ ଦୋଳିକର ବସି କରବା କଉତୁକୀ ପଣ ।

କେଶବ ମନରେ ଏମନ୍ତ ବିଚ୍ଛ ସୁନ୍ଦର ଜଗତ-ପ୍ରାଣକୁ
କଲେ ଆଦେଶ ଅମ୍ବର ଘେନି ଆସ କେଳିକଦମ୍ବର ପାଶକୁ
କେଶବ । ଆଜ୍ଞାରେ ପବନ ବହିଲା
କୁରଙ୍ଗୀ-ନେତ୍ରୀଙ୍କ ଅମ୍ବର ଅମ୍ବରେ କଢ଼ାଇ ବୃକ୍ଷରେ ଥୋଇଲା ।

କୁଞ୍ଜ ବିନୋଦୟୀ ବଂଶୀବଦନୀୟୀ ବସିଲେ କଦମ୍ବ ଉପରେ
କେବଳ ନୟନ ସଖା ସଙ୍ଗେ ଘେନି ରହିଲା ଗୋପୀଙ୍କ ଉପରେ
କାମିନୀ-ମାନେ ଜଳକ୍ରୀଡ଼ା ବଢ଼ାଇ,
କୂଳକୁ ଯାଇ ସମସ୍ତେ ଅନାଇଲେ କାହାର ପିନ୍ଧା ବାସ ନାହିଁ ।

କେ ଚକିତ ହୋଇ ରହିଲା ଚଞ୍ଚଳ କୁରଙ୍ଗୀ ପ୍ରାୟେ କେ ଗୃହିଲା
କେ ବୋଲେ ଆମ୍ଭର ଜଳକ୍ରୀଡ଼ା ସୁଖ ଅମ୍ବର କମା ନ ସହିଲା
କେ ବୋଲେ ! କେ କଲା ଏଡ଼େ ଅବିଚ୍ଚର
କେ ଅଛୁ କାହାକୁ ପଚ୍ଚରବା ଏହା କାହାର ତ ନାହିଁ ସଞ୍ଚାର ।

କେ ବୋଲେ ପବନ ଘେନଗଲା ଅବା କେ ବୋଲେ ହେବେ ନନ୍ଦସୁତ
କେ ବୋଲଇ ମୋର ମନକୁ ଅଇଲା ଆନର ନୋହେ ଏ ଚରିତ
କହନ୍ତେ । କେଉଁ ଗୋପୀ ଦେଲା ଅନାଇ
କଦମ୍ବ ବୃକ୍ଷରେ ଡୋଳା କରି ବସି ଅଛନ୍ତି ନାଗର କହ୍ନାଇ ।

କୋଟିଏ ଶରଦଚନ୍ଦ୍ର ଜିଣି ମୁଖ ଶ୍ରୀଅଙ୍ଗ ଅଭିନବ ଘନ
କଟି ତଟେ ପୀତ ବସନ ବିରାଜେ ବଳାହକବଲ୍ଲୀ ସମାନ
କଣ୍ଠରେ । ମୁକୁତା ମାଳ ବକପନ୍ତି
କଳାପୀ କଳାପ କଳାପ ମୁକୁଟ ଇନ୍ଦ୍ରଧନୁ ସମ ଦିଶନ୍ତି ।

କୃଷ୍ଣଙ୍କୁ ଅନାଇ ମନାକ୍ଷକୁ ପାଇ ଯେ ଯାହା ମତେ ତ୍ୱରି ହୋଇ
କଳହଂସୀ ପ୍ରାୟେ ସକଳ ଗୋପୀଏ ବେଗେ ପଶିଲେ ଜଳେ ଯାଇଁ
କେ ବୋଲେ । କି କରିବା କହ ସଙ୍ଗାତ
କୁଟ୍ଟିଣୀ ପ୍ରତିମା ପରାୟେ ଆଜ ତ ଅମ୍ଭଙ୍କୁ କଲେ ନନ୍ଦସୁତ ।

କର ଉର୍ଦ୍ଧ୍ୱ କରି ବ୍ରଜସୁନ୍ଦରୀ ଡାକିଲେ ହେ ନଟ ନାଗର
କ୍ଷମା ଆମ୍ଭ ନାଟ ନେଇ ଏତେ ହଟ କରନ୍ତି ରସିକ ସାଗର
କୃଷ୍ଣ ହେ ! କରୁଣାହୃଦ ଏବେ ହୁଅ
କରୁଛୁ ବିନତି ଗୋକୁଳସୁନ୍ଦରୀ ଆମ୍ଭ ଅମ୍ବରମାନ ଦିଅ ।

କରୁଣା କରି ନାଗର ଗିରିଧର ଦେଲେ ଯେ ଯାହା ଅମ୍ବରକୁ
କନକ ଦର୍ପଣ-ବଦନ ମଣ୍ଡିଲା ଗଲା ପ୍ରମାଦ ଡମ୍ବରକୁ
କୁରଙ୍ଗ । ତରଙ୍ଗ ନୟନ ନଚାଇ
କଲେ ହରଷେ ଗୋକୁଳକୁ ଗମନ ଉଚ୍ଚ କୁଚ ବାସେ ଲୁଚାଇ ।

କାଳିନ୍ଦୀ କୂଳସ୍ଥା କଦମ୍ବମୂଳସ୍ଥା କେକୀପୁଚ୍ଛ ଶିରୁ ଚୂଳସ୍ଥା
କଜଳକାଳୀସ୍ଥା କାଞ୍ଚନମାଳସ୍ଥା ମଣି ମକର କୁଣ୍ଡଳସ୍ଥା
କଳିତ, ଲଳିତ ପୀତଦୁକୂଳସ୍ଥା
କଳଙ୍କରହିତ କଳାକରଜିତ ସୁନ୍ଦର ମୁଖ ମଣ୍ଡଳସ୍ଥା ।

କୁଟିଳ ନୀଳ ଅଳକା ଆବଳସ୍ଥା ନବଲବଣୀକବଳସ୍ଥା
କେତେ କେତେ କଉତୁକ କରୁଥାନ୍ତି ବ୍ରଜ ସୁତ ସଙ୍ଗମେଳସ୍ଥା
କଦମ୍ବ । ବୃକ୍ଷକୁ ଓହ୍ଲାଇ ବିଜୟେ
କୃଷ୍ଣ ଦାସ ମନ ପଛେ ଗୋଡ଼ାଇଛୁ ସେହି ରୂପକୁ କରି ଲୟେ ।

('ରସକଲ୍ଲୋଳ'ରୁ ଗୃହୀତ)

———

# ଆରତତ୍ରାଣ ଚଉତିଶା

## ଦୀନକୃଷ୍ଣ ଦାସ

କୃପାସିନ୍ଧୁ ବଦନ　　　　କର ଅବଲୋକନ
କେଉଁ କରମ ହୀନ ଜନ
କାକୁସ୍ଥତର ହୋଇ　　　　କର ଯୋଡ଼ି ଜଣାଇ
ଗରୁଡ଼ ସ୍ତମ୍ଭ ସନ୍ନିଧାନ ହେ, ମହାପ୍ରଭୁ
କୃପାଅଶରତପଣ ହୋଇ
କରମ ହୀନ ଜନ ତହିଁ ।
କରୁଣା କଲ ନାହିଁ　　　　କ୍ଷମା ହେ ଖବଗାହୀ
କହ ମୁଁ ବିଚାରି ମଣଇ ହେ, ମହାପ୍ରଭୁ ।

ଖିଳ ବ୍ରହ୍ମାଣ୍ଡୋଦରେ　　　　କର୍ମ ହୀନ ଜନରେ
ଯେଣୁ ମୋ ସମ· ଆନ ନାହିଁ
ଖଗ ଢଳକ କାନ୍ତ　　　　ସେ କାରଣୁ ଏମନ୍ତ
ଖେଦ ଆରତେ କହୁଲଇଁ ହେ, ମହାପ୍ରଭୁ
ଖଣ୍ଡିଲ ନାହିଁ ଯେଣୁ ମୋର
ଖେଦ କରୁଣା ରତ୍ନାକର ।
ଖିଳ ବ୍ରହ୍ମାଣ୍ଡଧର　　　　ଖଣ୍ଡି ନାହିଁ କାହାର
କେଉଁ ବିପତ୍ତି ବିଶ୍ୱମ୍ଭର ହେ, ମହାପ୍ରଭୁ ।

ଗଜ ଗଜକୁ ଜଳେ　　　　ଗ୍ରାହ ଗ୍ରାସିବା କାଳେ
ଡାକିଲା ରଖ ଆଦିମୂଳ
ଗୁରୁତର ଆତଙ୍କ　　　　ଜାଣିଣ ତା ଶ୍ରୀରଙ୍ଗ
ରଥାଙ୍ଗ ପେଷି ତତକାଳ ହେ, ମହାପ୍ରଭୁ
ଗ୍ରାହ ଜୀବନେ-ନିବାରିଲ
ଗଜ ବିପତ୍ତିରୁ ତାରିଲ ।
ଗରୁତ୍ମାନ କେତନ　　　　ମମ କର୍ମକୁ ଯେଣ
ନିର୍ଗୁଣ ନିରବଧି ହେଲ ହେ, ମହାପ୍ରଭୁ ।

ଘନଶ୍ୟାମ ହେ ଘନ      ବିପଦ ବିନାଶନ
ବିଶ୍ୱସୁଥାଇ ମନେ ମୋର,
ଘୋର ବିପତ୍ତି ଗ୍ରୁର      କେତେ ମାତ୍ର ଯାହାର
ପ୍ରଭୁ, ମହିମା ଅକୂପାର ହେ, ମହାପ୍ରଭୁ ।
ଘନେ ଏ କଥା ମନେ ଥିଲି
ଘୃଣା କି କାରଣେ ହୋଇଲି ।
ଘୋର ବିପତ୍ତି ମୋର      ହୋଇ ଘଟ କୁମର
ମହିମା ବାରିଧି ଶୋଷିଲି ହେ, ମହାପ୍ରଭୁ ।

ନୀରକ୍ଷ ନିସ୍ତାରଣ      କାରଣେ ପ୍ରହରଣ
କର କମଳରେ ବହିଛ,
ନିଧନ ସମୟରେ      ନିରକ୍ଷ ଜନଠାରେ
ନିର୍ଦ୍ଦୟ ହୃଦୟ ହୋଇଛ ହେ, ମହାପ୍ରଭୁ ।
ନୀଳାଚଳରେ ତୁମ୍ଭେ ଥିବ
ନିରକ୍ଷ ଜନ ନାଶ ଯିବ ।
ନିଖିଳ ନିକେତନ      ନବ ପଞ୍ଚ ଭୁବନ
ମଧ୍ୟରେ କେମନ୍ତ ଶୁଭିବ ହେ, ମହାପ୍ରଭୁ ।

ଚତୁର୍ବର୍ଗ ଯାହାର      ଚରଣେ ପରଶୁର
ଚଞ୍ଚଳା ଯାର ଆଜ୍ଞାକାଂକ୍ଷୀ
ଦୃଷ୍ଟି ଯାହା ଶ୍ରୀମୁଖ      ଚ୍ୟୁତ ଦୂରିତ ଦୁଃଖ
ସେ ପ୍ରଭୁ-ଭୃତ୍ୟଙ୍କି ଉଖାସ୍ଥ ହେ, ମହାପ୍ରଭୁ
ଚତୁର୍ଦ୍ଦଶ ଭୁବନ-ପ୍ରାଣୀ
ଚକିତ ହେବେ ଏହା ଶୁଣି ।
ଚିହ୍ନ ନୋହେ କି ଏହୁ      କଥା ହେ ମହାବାହୁ
ନୀଳଶଇଳ ଚୂଡ଼ାମଣି ହେ, ମହାପ୍ରଭୁ ।

ଛାଡ଼ି ସକଳ ଆଶ      ତୁମ୍ଭ ପଦ ସାରସ
ଭରସା କରିଛି ସନ୍ତତେ,
କ୍ଷୋଭ ସାଗରେ ପଡ଼ି      ମରିବା କାଳେ ବୁଡ଼ି
ଛାଡ଼ି ତ ଦେଉଅଛ ମୋତେ ହେ, ମହାପ୍ରଭୁ ।

କ୍ଷିତିମଣ୍ଡଳେ ତୁମ୍ଭ ବିନା
କ୍ଷମେ କେ ଆଉ ପତିତଦେହ୍ଲା ।
ଛିଦ୍ର ନୋହେ, ଉଚିତ          କହୁଛି ପ୍ରଭୁ ସତ୍ୟ
ନିଶ୍ଚେ ଏତେବେଳକୁ ସିନା ହେ, ମହାପ୍ରଭୁ ।

ଜଗତ ଅନୁରାଗେ          ଜାତ ଅବନୀ ସ୍ୱର୍ଗେ
ଦାଇବେ ଜଗତର ନାଥ,
ଜଗତ ଜନଙ୍କର          ଭିତରୁ ହିଁ ବାହାର
ମୁହିଁ କି କାରଣେ ଅନାଥ ହେ, ମହାପ୍ରଭୁ ।
ଜଗନ୍ନାଥ ନାମ ବହିବ
ଜନ ଆରତ ନ ସହିବ ।
ଜଗତପତି ହୋଇ          ଅମିତ କଲି ଠାଇଁ
ଆଉ କେ କା ଆଗେ କହିବ ହେ, ମହାପ୍ରଭୁ ।

ଟଳିଛି ଏ ବଚନ          ନବ ପଞ୍ଚ ଭୁବନ
ଆରତଭଞ୍ଜନ ଶ୍ରୀହରି,
ଟେଙ୍କିକା ମଣୁଅଛ          କମ୍ପା ମୋ ବିପଦରେ
ବିନାଶ କାଳେ ଦଇତାରି ହେ, ମହାପ୍ରଭୁ ।
ଖାଡ଼େ ଡାକିଲ ଗର୍ଭା ଏଣୀ
ଟେଟିରେ ତା ଡାକ ଶୁଣି ।
ଟିମିଟେ ସେ ବିପତ୍ତି          ହରିଲେ ହେ ଶ୍ରୀପତି
ଜନେ ନିର୍ଦ୍ଦୟ କମ୍ପା ପୁଣି ହେଁ, ମହାପ୍ରଭୁ ।

ନିର୍ଦ୍ଦୟ ଥିଲେ ଟଡେ          କହ ହେ ପ୍ରଭୁ ମୋତେ
ମୋ ଜୀବ ପ୍ରତି ଆଶା ଫିଟି,
ନିଶ୍ଚେ କରୁଣା ନିଧି          ହେଲେ ନିର୍ଦ୍ଦୟ ନିଧି
ବୋଲି ତ୍ରିଭୁବନେ ପ୍ରକଟି ହେ, ମହାପ୍ରଭୁ ।
ନିଶ୍ଚେ ନିର୍ଦ୍ଦୟ ହେବ ଯେବେ
ନିଖିଲେ ଆଉ ନିକ ଥିବେ ।
ନାଗ ନୃପତି ସୁର          ସଂସାର ନିଜ ନର
ଯେ ଯାହା ସତ୍ୟକୁ ଲଂଘିବେ ହେ, ମହାପ୍ରଭୁ ।

ଟିକିଏ ବିଳମ୍ବିତ ନ କର ପାଣ୍ଡୁ ସୁତ
ଯୋଷିତ ସଙ୍କଟୁ ତାରିଲ,
ଟେକ ଦୁଃସହ ଘୋର ଦାରିଦ୍ର୍ୟ ସୁଦାମାର
ଦର୍ଶନ ମାତରେ ହରିଲ ହେ, ମହାପ୍ରଭୁ ।
ଟେକ କରୁଣା କଟାକ୍ଷରେ
ଟିକାଏ ବିଲୋକିଲେ ମୋରେ ।
ଟଳାବକ ମହିମା ସାଗର ସୁଖ ସୀମା
ଏମନ୍ତ ବିଗୁର ମନରେ ହେ, ମହାପ୍ରଭୁ ।

ଠାବ ନକଲ ଚକ୍ଷେ କେଉଁ ଦୋଷକୁ ମୋତେ
ନଗଣ କରୁଛ ଗୋସାଇଁ,
ଠାକୁର ହୋଇ ଭୃତ୍ୟ ଠାରେ କଲେ ଏମନ୍ତ
ଆଉ କା ଆଗେ କହିବଇଁ ହେ, ମହାପ୍ରଭୁ
ଠଳ ବିପତ୍ତି ଦେଖି ମୋର
ଠିକେ ବା କରୁଛ ଅନ୍ତର ।
ଠଣ ପଦ୍ମ ଚରଣ ବିନୁ ପ୍ରଭୁ କାରଣ
ଅଛି କେ ବ୍ରହ୍ମାଣ୍ଡ ଭିତର ହେ, ମହାପ୍ରଭୁ ।।

X X X

# ବର୍ଷାକାଳ ବର୍ଣ୍ଣନା

## ଉପେନ୍ଦ୍ର ଭଞ୍ଜ

---

ଆଷାଢ଼ସଘନକାଳ ହୋଇ ଉଦୟ ।
ଅସିତ ପରବଳରୁ ଦରଶମୟ ।୧।

ସ୍ତନିତ ହିଁ ସ୍ଫୁଟ କାଳକଣ୍ଠ ସରୁତ ।
ଅଚିରପ୍ରଭା ହିଁ ତାର ଦଶେ ଦଶେତ ।୨।

କେକୀର ସଙ୍ଗୀତରେ କାମୁକ ଉଲ୍ଲାସ ।
ଧରମଣି ଆଚ୍ଛାଦନେ ଘନ ବିଳାସ ।୩।

ନୀପବନ ସୁଖ ଦାନ କର ରଭସେ ।
ସ୍ତୋକରଟ ମସୃଣ ଯେ ଝିଲ୍ଲିକା ବସେ ।୪।

ସେ ଅନ୍ଧମକର ହର ଚିତ୍ତ ମୋହିଲ ।
ନଦୀ ବଣ ସଲିଳେ ଅଧିକ ହୋଇଲ ।୫।

ନୀଡ଼ ରଚିତ କାମରେ ବିଯୋଗୀ ଶଙ୍କି ।
ଯେନ ହା ରବ ରସେ ଯେ ଆଶୀବିଷଙ୍କ ।୬।

ନୀରତରୁ ଲୁବ୍ଧ ଫୁଲସକଳ ମିଣ୍ଡନି ।
ଦମ୍ପତି ରସକାରକ ବିଦେଶୀ ନିନ୍ଦ ।୭।

ଅଶନିପାତ ପଦ୍ମ ସେ ଏକା ଗୋଚରେ ।
ସୁମନ୍ତ ପାହୃତ ପାନ୍ଥ ଖିରୁ ବଗୃରେ ।୮।

କାଶ ସୁରଭି ସୁମନା ପ୍ରକାଶ ହୋଇ ।
ମଧୁପ ରମ ରେଚକ ନିବାସ ତହିଁ ।୯।

ପଶାରଙ୍ଗ ସ୍ଥାନେ ସ୍ଥାନେ ହୋଇ ମଞ୍ଜୁଳ ।
ଦୁର୍ଦ୍ଦିନବରେ ଅବିରତରେ ଚଞ୍ଚଳ ।୧୦।

ଘନ ଦୁଣତକୁ ଝଟଢରେ ପ୍ରକାଶେ ।
ଧନୀସାର ଭଦ୍ର ଶ୍ରୀମୁକ୍ତକ ପରଶେ ।୧୧।

ସ୍ୱର୍ଣ୍ଣକେତକୀ ବର୍ଣ୍ଣ ଧର୍‌ଫୁଲ୍ଲ ପୁଲକ ।
ବିଦ୍ୟୁଯମ୍ନକାର ଯେ ଭ୍ରମରେ ମେଳକ ।୧୨।

ଅଭସ୍ୟେ ବାଲକଣ୍ଠକ ଦଳେ ବିରହୀ ।
ବାମା ନଥାଲୀ ଯେ କାନ୍ତେ ସୁମନ ବନ୍ଧୁ ।୧୩।

ଭେକୀ ତବ ସ୍ଫୁଟିଁ ଘନେ ସ୍ୱରେ ସୁଟଉ ।
ବକବେଳା ପ୍ରକଟ ସ୍ନେହନ୍ନ ବସ୍ତୁତ ।୧୪।

ବିରହରେ ଏ ମମଦ୍ୟେ ଚିନ୍ତା କାତର ।
ସୁକୁମାର ତନୁ ତାପି ଢବାନଶିର ।୧୫।

ଆନ ଜ୍ଞାନ ହୀନଦଶା ଦେଖିରେ ହୋଇ ।
ଘନରସେ କାନ୍ତାଲିଙ୍ଗନକୁ ଧାଁଆଇ ।୧୬।

ସନ୍ତାପିକ ମଞ୍ଜୁ କଳରବେ ନନ୍ଦଇ ।
ଆପଦରେ ସ୍ୱରଭଙ୍ଗ ପୁଲକ ବନ୍ଧୁ ।୧୭।

ହେତୁହୀନ ସିଦ୍ଧି କର ହେ କାଳ କାନ୍ତ ।
ସ୍ୱପ୍ରାସ ବିଧିରେ ହୋଇବାକୁ ସହିତ ।୧୮।

ଦର୍ଦ୍ଧରିତ ମଧ୍ୟଜନ୍ମା କୁବୁଦ୍ଧି ମନ୍ତ୍ରୀ ।
ସେହି ମକରକେତନେ ମେଳ ଉନ୍ମତ ।୧୯।

ଖିବ ଛଳ ବଚନ ଏ ପ୍ରକାର କହି ।
ପଥର ସମତରେ ସେ କଷଣ ସହି ।୨୦।

ଗଜଗଡ଼ ଧୂର୍ଣ୍ଣୋଭିର୍ ନାମ ଜପଇ ।
ମନୀଷା କରେ ଅରୁଚ ପ୍ରକାଶ ଯହିଁ ।୨୧।

ବିଜନତ ଶୋକପୂର୍ଣ୍ଣି ଗୁହେଁ ଆଶାରେ ।
ସେବ ଶେଷରଞ୍ଜନ ହରଷାଦ୍ଧି ସ୍ମରେ ।୨୨।

ନୀରଜନକରେ ସେ ଶସ୍ତ୍ରନ ରଚନା ।
ଛିଣିବାରେ ସ୍ମୃତଗିରେ କରେ ଅର୍ଚ୍ଚନା ।୨୩।

ବ୍ୟଞ୍ଜନ ରସିତ ଉପକରଣଜାଳେ ।
ଉତପନ୍ନ ଗର ବୃଦ୍ଧି ଅବ୍ଜମୃଣାଳେ ।୨୪।

ରସନଧି ପ୍ରତିମା ସେ ତାହାର ହେଲେ ।
ବିକ ହେବ ଖିବଳସ୍ତୁ ବାଣୀ ଶୁଣିଲେ ।୨୫।

ବିପ୍ର ବରଣ କରିଧା ମାନସେ ଚିନ୍ତ ।
ଉପଗୃର ବାର୍ତ୍ତା ଏ କଥାରେ ଆରଢ ।୨୬।

ସୁବାସ ସୁମନେ ପାଣ ହେବାରେ ଧାୟି ।
ଉପାହ୍ୱତ ରସନଧ୍ୱ ସର୍ବଦା ସେହ୍ୱ ।୨୭।

ନବରସଙ୍କାତା ନାହିଁ ସଙ୍ଗ ତାହ୍ୱାର ।
ସହ୍ୱତ ରସରେ ମୁକ୍ତ ଅନୁକ୍ଷଣର ।୨୮।

ସକବି ରଚନେ କଷ୍ଟ ତ୍ରିକାଳ ଗ୍ରନ୍ଥେ ।
ବସୁଦେବ ତୋଷଦାତା ଉପେନ୍ଦ୍ର ବନ୍ଦେ ।୨୯।

ବିଖ୍ୟାତ ରସରେ ଇଚ୍ଛି ଲୁପ୍ତ ବର୍ଣ୍ଣର ।
ସୁମନରେ ମୋଦେ ଢନ ଗ୍ରନ୍ଥ ବଗୃର ।୩୦।

———

( 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ'ରୁ ଗୃହୀତ )

# ଦ୍ୱାରକାପୁର ବର୍ଣ୍ଣନ

## ଯଦୁମଣି ମହାପାତ୍ର

---

( ରାଗ—ରସକୁଲ୍ୟା )

ମଧୁପୁର-ପଦ ଅନନ୍ତଶେଷେ　　ପଦ୍ମାକାରର ମଣ୍ଡନତା ସର୍ବ୍ବେ
ହଂସ ମତରେ ଜାଣି ଏହୁ ମୂଳ　　ତାର କବଳେ ବର୍ତ୍ତି ଆନ୍ତ କୂଳ ସେ
ମୀନ, ଧ୍ୱଜ ରୂପେ ଶୋଭି ଯେ,
ବିଯୋଗୀ ଯେ ଶୂକରକାର ତାରଣେ ପ୍ରକାଶିତ କରେ ପ୍ରଭି ଯେ । ୧ ।

ଅଘାର ଅର୍ଦ୍ଧେନ୍ଦୁଙ୍କ ଅମ୍ବୁଜ କର　　ଛବି ବର୍ଣ୍ଣିବାର କବି ରୀତୁଷି
ବରଞ୍ଚି ଦର୍ପକାସ୍ତି ସର୍ପ-ଇନ　　ଚତୁର ପଞ୍ଚ ସହସ୍ର ବଦନରେ
କାହା କୀର୍ତ୍ତିଗୁଣ ଗାଇ ଯେ
ଅଷ୍ଟ, ପଞ୍ଚଦଶ ବିଂଶଶତ ନେତ୍ରକୁ ମୁଦନ୍ତି କାହାକୁ ଧ୍ୟାୟି ଯେ । ୨ ।

ବରଜବଧୂଙ୍କ ଉରୋଜ ବିଧୂ-　　ରଜ ଚନ୍ଦନ ବନ୍ଧନେ କେ ସାଧୁ
ଧନ୍ୟ ଆକାଶର ରୂଚ ସଙ୍କୁଳେ　　ଧନ୍ୟ ରହିଲେ କାହା ଗର୍ଭସ୍ଥଳେ ଯେ
ସନକାଦୀ ପୂଜ୍ୟ ନଦୀ ଯେ
କନକ କାର୍ଯ୍ୟରୁ କାହିଁକି ବନ୍ଦେ କଲେ କନକାଦ୍ରି ହୃଦ ଭେଦ ଯେ । ୩ ।

ସଦ୍ମ କରିବାରୁ ଅର୍କ ଚନ୍ଦ୍ରମା　　ଛଦ୍ମ କରନ୍ତି ପଦ୍ମ ମହିମା
ଗହଡ଼ ମଞ୍ଜୁ ଗୃହିଣୀଙ୍କ ମାଧୁର୍ଯ୍ୟ ରସ　　ତରଙ୍ଗରେ ତାହାଙ୍କ ତେଜ ସେ
ଭସାଇ ନେବାରୁ ଯେନ ଯେ
ସାନ୍ଦ୍ରା କରି ଧରି ରହିଛନ୍ତି ଗିରି ଗୋବର୍ଦ୍ଧନ ବୃନ୍ଦାବନ ଯେ । ୪ ।

ଏମନ୍ତ ରୂରୁ ଗୀର୍ବାଣଙ୍କ ଗିରୁ　　କୃଷ୍ଣ ବର୍ଣ୍ଣି ମୋର କର୍ଣ୍ଣେ ସଞ୍ଚରୁ
ସେ ତ ସୁଧାରସ ଆମୋଦଦାୟୀ　　ହୃଦୟରେ ଫଳପୂରଣ ହୋଇ ସେ
ମୂର୍ଖ ହେଲା ଉଚ୍ଛୁଳିତ ଯେ
ଦ୍ୱିବିଧ ପୂର୍ଣ୍ଣଚନ୍ଦ୍ର ମିଛି ଛନ୍ଦେ ପ୍ରବନ୍ଧ ହୋଇଲା ଖ୍ୟାତ ଯେ । ୫ ।

ଜାତବେଦେ ଭୂତମନ୍ତ୍ର ସୁବର୍ଣ୍ଣ    ରତ୍ନମୁଖେ ହୋଇଅଛୁ ଉତ୍ପନ୍ନ
ଯେଙ୍କର ମୁକୁଟେ ଅର୍ଜୁନ ପ୍ରଭା    ବନ୍ଧୁର ପର୍ବରେ ପ୍ରକାଶେ ବିଭା ଯେ
ଏଥି ଚରିତେ ଏ ଗ୍ରନ୍ଥ ଯେ
ରତ୍ନନ ହେବାରୁ ଗ୍ରନ୍ଥିକ ବନ୍ଧୁଳ    ପୂର୍ଣ୍ଣଚନ୍ଦ୍ର ପୁରୁଷାର୍ଥ ଯେ ।୬।

ଚନ୍ଦ୍ର ମୁଣ୍ଡ ଏ ହୋଇଛୁ ଯାହାର    ରୌଦ୍ରତା ବନ୍ଧୁ ନେହୁ ନ ବଗୁର
ବଧୂ ବଧ ରୁଦ୍ର ଉଚ୍ଛିଷ୍ଟ ଜଣା    ଶିବେ ଯାକେ ଚନ୍ଦ୍ରଚୂଡ଼ ଯାଜଣା ଯେ
ପଦ୍ମାବତୀଙ୍କର ପଦ ଯେ
ସମ୍ଭବ ସମ୍ପଦ ପଦାର୍ଥରେ ବ୍ୟର୍ଥ    ଖଣ୍ଡିବାର ଅପବାଦ ଯେ ।୭।

ସୁମନ୍ତ ଦେଇ ବଗୁର ସୁମନ୍ତ    ଅମ୍ବୁଧି ମଧ୍ୟବର୍ତ୍ତୀ ଦ୍ୱାରବତୀ-
ପୁରର ଆଶ୍ଚର୍ଯ୍ୟ କଳ୍ପନା ଶିଳ୍ପ    ଫଳକଳ୍ପ-କର୍ତ୍ତାର ପ୍ରଶଂସା କଳ୍ପ ଯେ
ବର୍ଷିକର କଳ୍ପ କଳ୍ପ ଯେ
ରମ୍ଭା କାମ କଳ୍ପ-ପାଦ ପଙ୍କଜଳ୍ପ    ପ୍ରଜଳ୍ପନେ ହେବ ଅଳ୍ପ ଯେ ।୮।

ଶତ କୋଟିକ ଶତକୋଟି ଗୁଣେ    ବଳି ବଳିଷ୍ଠ ହୋଇବା ପାଷାଣେ
ଘଟଣା ହୋଇଛୁ ଦୁର୍ଗ ପ୍ରାକାର    ରୁଚିତର ସୂଚିସମ ଜକର ଯେ
ତା କପାଟ ପାତ ଧ୍ୱନି ଯେ
ବଳସୁଁ କୈଳାସେ ମୟୂର ବିଳାସେ ଭସ୍ମ    ଭଞ୍ଜିନ୍ତ୍ର ସେନାନୀ ଯେ । ୯ ।

ଏମନ୍ତ କୋଟର ଗୁମଟ ଦ୍ୱାର    ପାର ଅହୋରାତ୍ର ପହରା ତାର
ଦୃଶ ପୁଣ୍ଡରୀକ କୁମୁଦ ପର    କୃଶ ପୁଣ୍ଡରୀକ କୁମୁଦ କରୀ ଯେ
ହେବେ ତା ରୂପଡ଼ ମାଡ଼େ ଯେ
ଦେବତାଙ୍କ ଆୟୁଧର ଧୂଳି କରିଦେବ ତା ଆୟୁଧ ଏଡ଼େ ଯେ ।୧୦।

× × ×

---

( 'ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର'ରୁ ଗୃହୀତ )

# ପ୍ରାତଃ ବର୍ଣ୍ଣନା

## ଅଭିମନ୍ୟୁ ସାମନ୍ତ ସିଂହାର

( ରାଗ—ନଳିନୀ ଗୌଡ଼ା )

ଧୀରେ ପ୍ରଭାତରେ ହର ଶଇଳ ଅଟନେ, ବିହାର ହର ଏ ସୁପ୍ତକର ବିକ୍ଷେପନେ ହେ । ୧ । ନାଗର ନାମରେ ଶଙ୍କା ହୋଇଲା ପ୍ରକଟ, ହିରଣ୍ୟତନୁ-ଦାରୁଣ-କର ସଙ୍କଟ ଯେ । ୨ । ମିଥୁନଚକ୍ର ଏ ଯେବେ ବିରାଗ କଢ଼ିଲା, ବୃକ୍ଷ ସନ୍ଧିତଟେ ମୃଗଧରେ ଲୁଚାଇଲା ଯେ । ୩ । ଆଲୋକରେ ଦ୍ୱିଜ ବାଣୀ ପ୍ରକାଶ ସ୍ୱଭାବେ, ସୁରାଳୟରେ ସୁକର ପାତ ହେଲେ ଜବେ ହେ । ୪ । ମୁନିପଥେ ପକ୍ଷ ପକ୍ଷ ବିରୋଧ ପ୍ରକାଶ, ପୁନ୍ୟଜନ ମୁଦାମୁଦ କର୍ମରେ ହତାଶ ଯେ (ରୂପକ) ଖଣ୍ଡିତାର ମଣ୍ଡିତା ସେ କାଳେ ଦାଳ ହେଲା, ବଞ୍ଚିକା ହୃଦବଞ୍ଚିକା ଆନନ ତ କଲା ଯେ । ୬ । ସ୍ୱାଧୀନଭର୍ତ୍ତୃକା ପଦ୍ମିନୀକି ଉଲ୍ଲସିଲା, ପ୍ରୋଷିତଭର୍ତ୍ତୃକା କୁମୁଦିନୀକି ହାସିଲା ଯେ । ୭ । ବିଟପୀଏ ନିଶାଚରୀ ପକ୍ଷିରବେ ଲୁପ୍ତ, ସଂଗୃହୀ ସଂଗ୍ରହ କଣି ସମାନରେ ଲିପ୍ତ ଯେ । ୮ । ଅଭିସାରୀ ପଥଖଣ୍ଡି ପରସ୍ପେ ବାଣିଲା, ବିପ୍ରଲବ୍ଧା ରସଲବ୍ଧେ ସନ୍ନିପାତୀ ହେଲା ଯେ । ୯ । ବିରହୋ-ତ୍କଣ୍ଠିତା ଚିତ୍ତଉନ୍ମାଦ କପଟ, କଳହାନ୍ତରିତା ତାପ ବାତବଦ୍ଧ ଘଟ ଯେ । ୧୦ । (ବର୍ଣ୍ଣାନୁପ୍ରାସ) ରାଧା ସୁଧାକରମୁଖୀ ନିଦ୍ରା ବିନାଶନେ, ମୁଖର ପ୍ରଖର ହୋଇ ମିଳିଲା ସେ ସ୍ଥାନେ ଯେ । ୧୧ । ହସେ ଖସେ କି ଗୋ ଏକି କୁଳବଧୂ ରୀତି, ପ୍ରାତେ ଏତେ ଶୋଇବାର କିଛି ସିନା ନୀତି ଗୋ । ୧୨ । କନ୍ଧ ଗ୍ରନ୍ଥି ଦେଖିଲା ହରିତବାସ ଅଙ୍ଗେ, ସ୍ଫୁଟ ଅଟ୍ଟାଟ୍ଟହାସରେ ବୋଇଲା ବିରାଗେ ଯେ । ୧୩ । ପତିବ୍ରତା ଶିରୋମଣି ପରସ୍ପେ କଶୋଷା, ନନ୍ଦନନ୍ଦନ ବାସେ ତ ମାନନ୍ତି ମାଧୁରୀ ଯେ । ୧୪ । ସତହିଁତ ହେଲା ଲୋକ ଅପବାଦ ଆସି, ଶାଶୁ ଆସୁ ଦେଖୁ ଏହା କେ ହୋଇବ ଦୋଷୀ ଯେ । ୧୫ । (ପ୍ରାନ୍ତାନୁପ୍ରାସ) ମିଛେ ବୋଇଲେ ତୁମ୍ଭେ ତ ସହଜେ ଜଳଙ୍କା, ମିଛରେ କାହିଁକି ଏତେ ହାଉଛ ବଳକା ଯେ । ୧୬ । ପ୍ରାତ ରବିକର ପୁଣି ଚହଟିଛି ଦିଗେ, ଗୋରୀ ତନୁ ତୋର ନୀଳାମ୍ବରେ ଫୁଟି ଦିଶେ ଯେ । ୧୭ । ଉଡ଼ାଇ ଦେଲେ ବୃଢ଼ୀକି ଇଙ୍ଗିତ ହାସରେ, ପଳାଇ ପଶିଲା ଲକେ ଆପଣା ବାସରେ ଯେ । ୧୮ । ଅନଙ୍ଗମଞ୍ଜରୀ କର ପାଦ ମଞ୍ଚାଳନ, ଶ୍ରୀଅଙ୍ଗରୁ ନିଦ୍ରାଳସ କଲା ବିଦଳନ ଯେ । ୧୯ । ଉଭି ଉଭା ହେବା ଶୋଭା କୃଷ୍ଣବର୍ଣ୍ଣ ଶେଯେ, କାଳିନ୍ଦୀରେ ହେମ ପଦ୍ମଲତା ଜାତ କି ଯେ ସେ । ୨୦ ।

(ମଧ୍ୟାନୁପ୍ରାସ) ଜବାଧଣ୍ଡି ଧନ୍ୟ ମିତ ଜଣ—ଚନ୍ଦ୍ର ଲଭେ, ସୁବସନ ମନମାନ ବ୍ୟସ୍ତ ଶ୍ରୀଅଙ୍ଗରେ ଯେ । ୨୧ । ମୁକୁଳ ବଟଦେଶ ଆଦି ନିନ୍ଦିଭିନ୍ନ, ଉନ୍ନତ ଛବି ଛବିଲରେ କଟିର ଯେ ଲପନ ଯେ । ୨୨ । ଗମନରେ ନରେଶଙ୍କ ଦଳଇ ହଂସୀକି, ଛଳକାରେ ବାଟେ ନେମ ବଳ୍ଲଣ ମଞ୍ଜନ ଯେ । ୨୩ । ରଣରଣ ରଣଗ୍ରାନ୍ତ ପଦବିକ୍ଷେପରେ, ମ୍ଲାନ ହାର ସାରସ ବଧୂଙ୍କ ଛନ୍ଦନେ ଯେ । ୨୪ । ବିଘୂର୍ଣ୍ଣିତ ନତମ୍ବିନୀ-ନୟନ ଚକୁରୀ, ଯାଉଁ କରି କଖଗଢ଼ ପୀଠରେ ବାନ୍ଧିଛି ଯେ । ୨୫ । (ଆଦ୍ୟ ପ୍ରାନ୍ତାନୁ-ପ୍ରାସ) ଭଦ୍ର ପତ୍ନୀ ମିଳି ନୃଳ ବୋଲେ ଏଣୁ ଭଦ୍ର, ଛିଦ୍ର ନେ କଲ ରମଣୀମଣିତ ଅଚ୍ଛିଦ୍ର ଯେ । ୨୬ । ହାରମଣି ନ କଲୁ ତ ପ୍ରୀତିକି ନିମନ୍ତ୍ର, ହାରକୁ ହିଁ ଆମ୍ଭେ ପରି କଲୁ ଅଙ୍ଗ ହାର ଗୋ । ୨୭ । ବାସ ଅନୁସନ୍ଧି ପାଇଥିଲ ଅଙ୍ଗେ ବାସ, ବାସକ-ମୋହନୀ ତାକୁ ଦେଲୁ ପରବାସ ଗୋ । ୨୮ । କର୍ଣ୍ଣିନାଦେ କାଞ୍ଚିପରେ ଧନକୁ କଙ୍କିଣୀ । ଗୁଣୀମଣି ତାକୁ ଦୂର କରନ୍ତି କି ଗୁଣି ଗୋ । ୨୯ । ବେଣୀ ଭ୍ରମ ମିତର ନ ରଖିଲୁ ସୁନ୍ଦରୀ । ଆଣି କାହୁଁ ଦେଖାଉଛୁ ନୂଆ ନୂଆ ଆଣି ଗୋ । ୩୦ । (ଛଳ) କେ ବୋଲଇ ଭ୍ରମ ସାର୍ଥ କଲ ଯେ ମିତର । କେ ବୋଲଇ ରଣକନ୍ୟ ବନ୍ଧିକ ପଗର ଗୋ ।୩୧। କେ ବୋଲଇ ଅମ୍ଭ ସଖୀ ସଦା ସ୍ୱଚ୍ଛମନା । ଜୟ ବାଧିଚନ୍ଦ୍ରରେ କି ଯହୁ ନାହିଁ ଚହ୍ନା ଗୋ । ୩୨ । (ପ୍ରାନ୍ତାନୁପ୍ରାସ) କଙ୍କଣ ଚହ୍ନରୁ କରୁଥାଇ ଅନୁମାନ । ମାର ତୋଠାରୁ ନିଡ଼ାଇ ରଖିଲ ସମାନ ଯେ । ୩୩ । ଦର୍ଶ୍ରୂଳ ଉରଜ ବେନି ଉପମା ବହୁଛି । ଜସ୍ୱ ନାଗରୀ ମୂଗଲ ଉଲଟେ ଚହ୍ନିଛି ଯେ । ୩୪ । ଦେଖ କାମ ଆସିଥିଲ ପତାକା ଉଡ଼ାଇ । ମୁକ୍ତବେଣୀ ନୁହେ ତାହା ରଖିଛି ଛଡ଼ାଇ ଗୋ । ୩୫ । ମାର ଅଧା ଚନ୍ଦ୍ର ଶର ବାଜି ଉପୁଡ଼ିଛି । ହୃଦଜାତ କଠିନତା ଚହ୍ନାଇ ଦେଇଛି ଗୋ । ୩୬ । ଭ୍ରୂଭଙ୍ଗି ଅଞ୍ଚଳରୁ ସୂଚିତ ଅନୁମାନ । ଗ୍ରନ୍ଥିକରି ପଳାଇଛି କାମ ଶରାସନ ଯେ । ୩୭ । (ଛଳଶ୍ଳେଷ) କେ ବୋଇଲ ରସନା ମୁଖରାପଣ କଲ । ଦୂର କରି ଦେବାର କି ବହୁତ ନୋହିଲୁ ଗୋ । ୩୮ । ନାୟକ ହୃଦମନ୍ତ୍ରେନ ହୋଇଲ ବଶେଷେ । ତହିଁ ହୃଦସ୍ଥ ଦର ରଖିବ କି ଆଶେ ଗୋ । ୩୯ । ଅଙ୍ଗଦେଶେ ପଦ ଅଧିକାର ପାଇବାରେ । ବାସକର ନୁହନ୍ତି କି ବସ୍ତୁର ମନରେ ଗୋ । ୪୦ । ପ୍ରତାପକର ବଜଗୋ ନ କରଇ କି କି । ଉରଜେ କର-ପୀଡ଼ାକୁ ଦେବାରୁ ତରକ ଗୋ । ୪୧ । ଖଳ ନନ୍ଦାକ୍ଷେ ପଳାଇଥିଲେ ସେ କାଳରେ । ଏତେବେଳେ ଦେଖା ଦେଉଛନ୍ତି ଦେଖ ଧୀରେ ବୋ । ୪୨ । (ଛଳରୂପକ) ମୁଖ ଶଶିରୁ ପୀୟୂଷପାନେ ପ୍ରାଣଈଶ । ସୁଧା ଶେଷରୁ କି ମୋକ୍ଷ ହୋଇଅଛି ହାସ ଗୋ । ୪୩ । ପାଞ୍ଚ ହସ୍ତିଥିଲ ହସ୍ତ ରାଗକୁ ଅଧରେ । ଦାନଦେଲ ପରି କାନ୍ତେ ଦ୍ୱିଜ ସଙ୍କଳ୍ପରେ ଗୋ । ୪୪ । ରାଗ ବୀଜାଙ୍କୁର କଲ ଚୁମ୍ବ ଅଭିଯୋଗେ । ଗଣ୍ଡସ୍ଥଳୀ-ପାକେ ଶୁଦ୍ଧି ଦେବାର କି ରଙ୍ଗେ ଗୋ । ୪୫ । ଦ୍ୱିଜ ମୁଦ୍ରା ମୁଦପରି ମଣିଲୁ ମୁଁ ତହିଁ । ନିଦ୍ରାଗତ ନେତ୍ର ପଦ୍ମ ଲୁଚିଉଛି ସହି ଗୋ । ୪୬ । କାଲି ଶିବରାତ୍ରି ଗଲ

ଈଶ ସେବନରେ । ଧ୍ୟାନ-ମଗ୍ନ ଆସ୍ୱାଦଇ ଭାବ ଏ ଚାର୍ଯ୍ୟରେ ଗୋ ।୪୭। (ଲକ୍ଷଣ-ଶଙ୍କର) ଘନରସାଗମ ଭାଳେ ମାନୀବନ୍ଧ ଭଙ୍ଗି । ଦୁଃଖାର୍ଜିତ ଲୁଚି ଧୋଇ ହୋଇ-ଥିବା ସଙ୍ଗୀ ଯେ ।୪୮। କେ ବୋଲେ ରସ-ପ୍ରବାହ ସ୍ରୋତ ଅଢରେକେ । ସେ ବନ୍ଧ ନିର୍ବନ୍ଧ କଲେ ରହିବ କି ଟେକେ ଯେ ।୪୯। କେ ବୋଇଲା ରହିବୁଙ୍କି କୂଳ ବୁଡ଼ାଇବ । କେ ବୋଇଲା ମନ-ମୀନ ମଗ୍ନକି ନୋହିବ ଯେ ।୫୦। ଧୀରରେ ଅଙ୍ଗନାବର ପ୍ରକ୍ଷୁର ହୋଇବ । ଅମ୍ଭର କି ଦୁଃଖ-ନଦୀ ତରଣ ନୋହିବ ଗୋ ।୫୧। କାହ୍ନାଠାରୁ ଏହା ଶୁଣି କେ ବୋଇଲା ହସି । କେତେ ଲାଜ କରାଉଛ ବୟସୀ ଏ ଆସି ଗୋ ।୫୨। (ବନ୍ଦୋକ୍ତ) ତା ତ ଅଡନୁକୁ ସାନୁ ସମତନୁ ପାଇଁ । ଅମାପ ତାପ ପୂରିଛୁ ନ ଦବା ଛଡ଼ାଇ ଗୋ ।୫୩। କେ ବୋଲେ ସୁନାସି ପରି କରିଛୁ ଦାଇବ । କାଶୀର ଝାଙ୍ଗଣା ଯୋଗ ଆନ କେ କରିବ ଗୋ ।୫୪। ଘନରସ ମଜ୍ଜନେ ସେ ତାପ ତୁଟିଯିବ । ସ୍ନେହରସାଣେ ଚକ୍‌କଣ ଫୁଟି ପ୍ରକାଶିବ ଗୋ ।୫୫। ସୁଯୋଗରେ ଭୋଗ ହେବ ନାଗରମଣିକି । ଅଲଙ୍କାରରେ ନିପୁଣ ବୋଲି ନ ଜାଣ କି ଗୋ ।୫୬। ଶୁଣି ସୁଦେଣୀ ସେ ମାତ ସାରିଲେ ବଚନ । କେଉଁସଖୀ ପରିହାସେ କଲା ଜଳପାନ ଯେ ।୫୭। (ଚତୁର୍ଥୀ ଉକ୍ତ) ବୀର ଉନ୍ମତ ଛଡ଼ାଇ କରାଉଛୁ ନତ । ରାଗ ମୂର୍ତ୍ତି ଶ୍ରୀପଦକୁ କରାଅ ଙ୍ଗ ଚେଡ ଗୋ ।୫୮। ବୀର କେଶରୀ ଉପମା ବଦନେ ଦାନ୍ତିଲା । ବଳୀ ବଳା ଅବଳା ବୋଲାଉ ଦାଅ ବଳା ଗୋ ।୫୯। ଘନରସେ ବୃଦ୍ଧି ବନ୍ଧେ ଆଗ ଭ୍ରମୀ ପଦ । ଯୋଡ଼ାଏ କଟକ ଦାନ ଦେବାର ସମ୍ପାଦ ଗୋ ।୬୦। ସ୍ମର ସାଧନରେ ଉରୁ ଲୁଲୁଚ ହୋଇଛୁ । ନିତମ୍ବ ଚକା ପ୍ରମାଦ ବ୍ୟଥିତ ପାଇଛୁ ଗୋ ।୬୧। ସ୍ମରଶର ଘର ଜୁର ବୀର କରିଅଛୁ । ସେମାନଙ୍କର ପିବାକୁ ଶାଢ଼ୀ ଦାଅ ବାଛୁ ଗୋ ।୬୨। ( ବନ୍ଦୋକ୍ତ) ଅଙ୍ଗଦେଶ ଈଶ ଭୋଗ କଲେ ଯେତେବେଳେ । ଉରଜେ କରପୀଡ଼ାରେ ବହୁଦୁଃଖୀ ହେଲେ ଯେ ।୬୩। ଚନ୍ଦ୍ର ଚନ୍ଦନରେ ତାଙ୍କୁ କର ଗୋ ରଞ୍ଜନ । ଖ୍ୟେଳଦେଶେ ଲୁଚିଇ ଥୋଇବା କଥା ମନ ଗୋ ।୬୪। ମନୋରଥପୂର୍ତ୍ତି କଳ୍ପଲତା ଭୁଜ କଲା । ତାଡ଼ ଚୂଡ଼ୀ ବଳା ମୁଦି ଦେବା ଯୋଗାଇଲା ଯେ ।୬୫। ରାମହାର ଦାନରେ ସୁଗ୍ରୀବ ଶୋଭା ଦିଶୁ । ସ୍ମର ଅସୁର ଉନ୍ମୂଳ ଦୁଃଖ ଚନ୍ତା ନାଶୁ ଯେ ।୬୬। ଶ୍ରୁତିରେ ରସନାହତ ଆଦର ନୁହେଁ କି । ବନ୍ଦୀଆରେ ପାଉ ବଣ୍ଣ-ବନ୍ଦୀଆ କୀର୍ତ୍ତି କି ଗୋ ।୬୭। (ଚତୁର୍ଥୋକ୍ତ) କର୍ଣ୍ଣବୀର ନାମେ ଫୁଲଛଡକ ଟେକାଉ । ଫିରିଫିରି ଫରହର ପତାକା ଉଡ଼ାଉ ଯେ ।୬୮। ମଲ୍ଲୀକଢ଼ୀ ଏକଘନା ଧରାଅ ଗୋ ବେଗେ । ବୀରବର୍ଗ ବିନାଶିବ ମାର ରଣରଙ୍ଗେ ଯେ ।୬୯। ସୁରମଣି ନାକରେ ନର୍ତ୍ତନ ପ୍ରବର୍ତ୍ତାଅ । ବିଶେଷ ତ ନୟନ ଆନନ୍ଦଦାୟୀ ହୁଅ ଗୋ ।୭୦। କୁଟିଳ ସ୍ୱଭାବକ ଏ କୁନ୍ତଳ ପଳାଇ । ସୁମନ ତେଜି ଚରମେ ଲୁଚଥିଲା ଯାଇ ଗୋ ।୭୧। ଦୃଢ଼ ବନ୍ଧ ଦେଖି ସିନା ଏ ଶାନ୍ତକି କଲା । ଦୃଢ଼-ବନ୍ଧ କର ତାକୁ ଦଣ୍ଡ ଯୋଗାଇଲା ଯେ ।୭୨। ଈଶ

ଦରଶନ ବାଧା କରୁଛ ମନ୍ଦାକ୍ଷ । ତାହା ମୁଖେ କାଳି ଦଅ ବୋଲନ୍ତି ମନ୍ଦାକ୍ଷ ଯେ । ୭୩ । ଅଧର ଭାଗ ଭଣ୍ଡାର ଦେଉଛୁ ଲୁଣ୍ଠାଇ । ତାମ୍ବୁଳ ରାଗ ପୂରଣ କର ଲେଉଟାଇ ଯେ । ୭୪ । ଶ୍ରୀମୁଖ ପ୍ରସନ୍ନ ଦେଖୁ ଯେଣ ଦରପଣ । ତେଣୁରେ ଭାସ୍ୱର କରୁ ଗଲ ଦରପଣ ଯେ । ୭୫ । ଆଳୀ ଚୁଳି ଏ ଭାବରେ ବେଶ ସିଦ୍ଧି କଲେ । ଗତବତ ବନ୍ଦୀସ୍ୱରେ ପାକକୁତେ ରହିଲେ ଯେ । ୭୬ । ଗ୍ରାହକେ ଜାଣିବେ ଏଥି ଭ୍ରମମର୍ମସ୍ୱାଦ । ରସେ ଅଭିମନ୍ୟୁ ଭାବେ ରାଧାକୃଷ୍ଣ ପଦ ଯେ ॥

("ବିଦଗ୍ଧ ଚିନ୍ତାମଣି"ରୁ ଗୃହୀତ)

———

# ରାମକୃଷ୍ଣଙ୍କର ବେଶ ବର୍ଣ୍ଣନା

## ଭକ୍ତଚରଣ ଦାସ

---

( ରାଗ-କେଦାର କାମୋଦୀ )

କୃଷ୍ଣଙ୍କୁ ବେଶ କର ସୁଦାମା ମାଳୀ, ଚୂଳେ ଖଞ୍ଜିଲା ନେଇ କେତକୀ କଳି ଯେ ।
ଆସେ କି କେଶ ରାହୁ ରସନା ରୂଳି । ମୁଖ-ଚନ୍ଦ୍ରକୁ ଦେବ କି ଅବା ଗିଳି ଯେ ।
ବେଢ଼ାଇ ଦେଲା ନବ ବକୁଳ ଦାମ, ଶୋଭାକୁ ଶଙ୍କ ରୂପ ନୋହିବ ସମ ଯେ ।
ଭୁଜଙ୍ଗ ଭୁଜ ପୁଚ୍ଛ ତଥି ଉପରେ, କୋଟି ଚନ୍ଦ୍ରିକା ସମ ନୋହିବେ ତାରେ ଯେ ।
ରଙ୍ଗ କୁସୁମ ବେଣୀ ପଛକୁ ପଡ଼ି, ଯମୁନା ଜଳ ରକ୍ତ କୁମୁଦ ଧାଡ଼ି ଯେ । ସେହି
ପ୍ରକାରେ ଦିଶୁଅଛି ଶେ ଭଳ, ପୁଣ ଗଳାରେ ମାଳା ଜାତି କୁସୁମ ହେ । ଅତି ସୁଗନ୍ଧ
ଦଶେ ଉର ଲପନ, ହେର ରମ୍ଭା ତେଜିବ ସ୍ୱର୍ଗଭୁବନ ଯେ । ରାମକୁ ସେହିରୂପେ
ବହନ ସାଜି, ଭଲ ସେ ମାଳାକାର ଖଂଜିଲା ହେଜି ଯେ । କି ଅବା ମତ୍ତ-ଗଜ
କୁମ୍ଭେ ବେଶ, ସେହି ପ୍ରକାରେ ରାମ ଗୋବିନ୍ଦ ଦୃଶ୍ୟ ଯେ । ଦେଖିବ ନାହିଁ କାହିଁ
ଏଡ଼େ ବଚଣ, ଦେହି ବର୍ଣ୍ଣିବାକୁ ବା କେ ଅଛି ପାଣ ଯେ । କରି ସୁବେଶ ମାଳୀ
ମାଗିଲା ବର, ଅସ୍ତୁ ହେଉ ବୋଇଲେ ବରଜବର ଯେ । ସେଠାରୁ ବିଜେ କଲେ
ବେନି ସୋଦର, ବେଢ଼ି ଅଛନ୍ତି ଚଉପାଶେ କୁମର ଯେ । ଦେଖିଣ ମଧୁପୁର ନାରୀ
ପୁରୁଷ, କାହାର ମନେ ଆଉ ନାହିଁ ହରଷ ଯେ । ପଥ ତନସ୍କୁ ଗୃହ ଲଜ୍ଜାକୁ ଏଡ଼ି,
କନ୍ୟା ସ୍ତ୍ରମ୍ଭ ପରସ୍ପେ ଧାଡ଼ିକି ଧାଡ଼ି ଯେ । ରୁହିଁଲେ ହରି ରଙ୍ଗେ କୁବୁଜା ଆସେ,
ଛନ୍ଦ ବାଙ୍କେ ଶରୀର ପ୍ରପଞ୍ଚ ବେଶେ ଯେ । ଘେନିଛି କଂସ ଅଙ୍ଗ-ଲାଗି ଚନ୍ଦନ, ରୁହିଁ
ହସନ୍ତି ସବୁ ଗୋପନନ୍ଦନ ଯେ । କୃଷ୍ଣ ବୋଲନ୍ତି ଆଗୋ ଶୁଣ କୁବୁଜା । କିସ
ନେଉଛୁ ଦେଖା ଦେଖି ଅନୁଜା ଗୋ । ଆମ୍ଭର ଯୋଗ୍ୟ ହେଲେ ଆମ୍ଭେ ରଖିବୁ,
ନୋହିଲେ ନେଇ କଂସ ରାଜାକୁ ଦେବୁ ଗୋ । ରାମ ଅନୁଜ ବାଣୀ ଶୁଣିଲା ଯହୁଁ ।
ବଙ୍କ ନୟନେ ଚାହିଁ କହିଲା ତହୁଁ ଯେ । କଂସର ଗନ୍ଧକାରୀ ଅଟଇ ମୁହିଁ, ନିତି
ନିତି ତାହାକୁ ଖଟାଏ ନେଇ ଯେ । ତୁମ୍ଭେ ମାଗିଲ ମୋତେ ରୁଚିର ଚନ୍ଦନ, ଦୁଇ
ଭାଇଙ୍କୁ କରି ଦେବ ଭୂଷଣ ହେ । ମୋହର କଥା ଏକ ଅଛି ମାଗୁଣି, ଦେବଟି
ମୋତେ ନିଷ୍ଟେ ମୁଲକାପାଣି ହେ । ହରି ବୋଇଲେ ଆଗେ ଦିଅ ଗୋ ଗନ୍ଧ,
ଫେଡ଼ି ଫେଡ଼ିଲା ହୋଇ ଅତି ଆନନ୍ଦ ଯେ । ପ୍ରଥମେ ଚତୁଃସମ ଅଙ୍ଗେ ଲେପିଲା,
ଗୋବିନ୍ଦ ଅଙ୍ଗ ନେଇ ଆଗେ ବୋଲିଲା ଯେ । ଶିର ଗଣ୍ଡରେ ସିଞ୍ଚି ଦେଲେ

ଅଳପ, ତପ ଯେ କରିଥିଲ କେତେ କଳପ ଯେ । ଲଲାଟପଟେ ଟେଳେଖ ଅପୂର୍ବ ଚିତା, ଦେଖି ବୁଦ୍ଧିର ଊର୍ଦ୍ଧ୍ୱରେ ତାଙ୍କ ଟେକିତା ଯେ । ଗଣ୍ଡଦେଶରେ କଳ୍ପ ଚିତ୍ର ମକର । ଚନ୍ଦ୍ରକୁ ବେଢ଼ିଲେ କି ଅବା ତାରାବଳୀ ଯେ । ଏହି ପ୍ରକାରେ ସ୍ୱାମଙ୍କୁ ବେଶ କଲ । ସ୍ୱଧି ମଣ୍ଡଳେ ଗୋପକୁମରେ ଦେଲ ଯେ । ଦେଖି ପ୍ରସନ୍ନ ଚନ୍ଦ୍ରେ ଶକଟାଭଞ୍ଜା, ସଲଖି ଦେଲେ ଧରି କୁବ୍ଜା ଖଞ୍ଜା ଯେ । କର ଲାଗନ୍ତେ ତନୁ ହୋଇଲା ସୁନ୍ଦର । ନୟନ ଇନ୍ଦୀବର ମୁଖ ଚନ୍ଦ୍ରର ଯେ । ନାସିକା ତିଳ ଫୁଲ ଠାଣି ଆଣଇ । ଭ୍ରୂଯୁଗଳ କାମ ପାଶ ଜିଣଇ ଯେ । ଗଣ୍ଡ ଉପମା ହେବ ଆଦ-ରସକୁ, ବଚନ ସମ ହେବ ପିକ ଘୋଷକୁ ଯେ । ଓଷ୍ଠ ସୁରଙ୍ଗ ପକ୍ୱ ବିମ୍ବ କି ଅବା, ଦଶନ ଲକ୍ଷ୍ୟ କୁନ୍ଦ ହୀରକୁ ଦେବା ଯେ । କଣ୍ଠ ଦର୍ଶନ କୃତ ଶାରଙ୍ଗ ପରି । ଉରଜ ହେମ କୁମ୍ଭ ମାର ବଇରି ଯେ । ବାହୁ ବଳଣ ଜିଣି ହେମବ୍ରତତୀ, ଅଶୋକ ଜଡ଼ି ପ୍ରାୟ ଅଙ୍ଗୁଳି ପନ୍ତି ଯେ । ସୁଗ୍ର ଅଙ୍କ ମଧ୍ୟମା କଟିକି ଲକ୍ଷ, ବେନି ଜଘନ କିଏ କଦଳୀ ବୃକ୍ଷ ଯେ । ଚରଣ ପଦ୍ମ ଠାଣି ଅପୂର୍ବ ଶୋଭା, ଦେଖି ଭ୍ରମର ଗଣେ ହୋଇବେ ଲୋଭା ଯେ । ଆପଣା ରୂପଗୁଣି କୁବ୍ଜା ଚିହ୍ନି । ହୃଦୟରେ ଏହା ନେଇ ଯୋଚିବ ଚାହିଁ ଯେ । ଜାହାକୁ ସମର୍ପିବି ଅପୂର୍ବ ଧନ, ଏ ଧନ ଦେଲେ ସିନା ନନ୍ଦ ନନ୍ଦନ ଯେ । ଏତ୍ତା ଅର୍ଜିଲି ବିତ୍ତ ଏହାଙ୍କୁ ଦେବି । ନ ନେବ ଯେବେ ଅଗ୍ନି ଜାଳି ମରିବି ଯେ । ଏତେ ବିଚାରି ନାଶ ଗୁଡ଼ିଲ ଲାଜ । ଧାଇଁ ଧଇଲ ଯାଇ ଗୋବିନ୍ଦ ଭୁଜ ଯେ, ବୋଲେ ଶୁଣିମା ହେଉ ବ୍ରଜମୋହନ, ଯାହା ମାଗୁଛି ତାହା ଦିଅ ବହନ ଯେ । ସ୍ୱଧି-ବଦନେ ବନମାଳୀ ହସନ୍ତି, କି ବର ମାଗୁଅଛୁ ମାଗ ଯୁବତୀ ରେ । ଦେବଇଁ ସତ୍ୟ ମୋର ଆରେ କୁବ୍ଜା, ବାଳୀ ବୋଲଇ ହେବ ତୁମ ଭାରିଯା ହେ । ଏ ନବ-ଯୌବନ ତୋହର ସିନା, ଦେଖ ମୁଁ ହଶୁଅଛି ବେମନ୍ତ କିନା ହେ । ରୋପିଲ ବୃକ୍ଷ ଫଳ ଆପଣେ ଭୁଞ୍ଜି, ଜାଣି ବିରଞ୍ଚି ତାହା ଅଛଇ ଖଞ୍ଜି ହେ । ଭୋଗ ନ କଲେ ତାକୁ ବୋଲି ଅଯୋଗ୍ୟ, ଲାଜ ହୁଅଇ ପରେ ହୋଇଲେ ଯୋଗ୍ୟ ଯେ । ତୁ ସିନା ରୂପବତୀ କରିଛୁ ମୋତେ, ଏଣୁ ଯୋଗାଏ ହରି କହୁଛି ତୋତେ ଯେ । କହି ନ ଗୁଡ଼ି କର ଧରି ଶ୍ରୀହରି, ଦେଖି ସଙ୍କୋଚ କଲେ କୁଞ୍ଜବିହାରୀ ଯେ । ବୋଲନ୍ତି ସଙ୍ଗେ ମୋର ଅଛନ୍ତି ହଳୀ, ଲଜ୍ଜା କି ନାହିଁ ତୋତେ ମଥୁରାବାଳୀ ରେ । ଆଗେ ମୁଁ କଂସ ଦର୍ପ କରଇ ଚୂର, ବନ୍ଧୁ ଜନମାନଙ୍କ ସନ୍ତାପ ହରି ଯେ । ତେବେ ଆସିବି ତୋର ପୁରକୁ ମୁହିଁ, ପୁର ମଣ୍ଡନ କରୁଥାଅ ଯା ତୁହି ଗୋ । ଶୁଣି କୁବ୍ଜା ମନେ ଆନନ୍ଦ ହେଲ । ମେଲାଣି ମାଗି ନିଜ ଭୁବନେ ଗଲ ହେ । ସାଜିଲ ନାନା କଉତୁକେ ମନ୍ଦିର, ଯେସନେ ଦିଶେ ବାରସ୍ଥଳ ସୁନ୍ଦର ଯେ । ଗୋବିନ୍ଦ ଆସିବାକୁ ବଳାଇ ଆଶ, ଆପଣେ ହେଲ ବାଳୀ ବିଚିତ୍ର ବେଶ ହେ । ବାନ୍ଧିଲ କନ୍ଧଦେଶେ ଲଗାଇ ଜୁଡ଼ା, ମଲ୍ଲୀ କଳିକା ସଙ୍ଗେ ଜାଡ଼ି ପାଖୁଡ଼ା ଯେ । ଶିରେ ସୀମନ୍ତ ଚୂର୍ଣ୍ଣି କୁନ୍ତଳା ମାଜି । ଘିଲେ ସିନ୍ଦୂର ନେତ୍ରେ ଅଂଜନ ରଂଜି ଯେ । ନାସେ ଦସଣୀ କଣ୍ଠେ ହେମ ତାଟକ, କଣ୍ଠେ ମୁକୁତା ମାଳା

କରେ ଝମକ ଯେ । ଉର ଉପରେ ପତ୍ରାବଳୀ ଲେଖନ, କଟିରେ ଆଚ୍ଛାଦନ ବସ୍ତ୍ର ସୂକ୍ଷ୍ମ ଯେ । ବେନି ଭୁଜରେ ଶୋଭେ ସୁବର୍ଣ୍ଣ ଚୂଡ଼ି, ଅଙ୍ଗୁଳିମାନଙ୍କରେ ମୁଦ୍ରିକା ଧାଡ଼ି ଯେ । ପାଦେ ଯାବକ ଲେଖି ଝଂଜ ନୂପୁର । ମନ୍ଦ ଚାଲିକି ନାଦ କଲା ମଧୁର ଯେ । ଶେଯ ଶେଯାଇ ବସି ରହିଲ ବାମା, ବୋଲେ ଆସିବେ ନନ୍ଦ ନନ୍ଦନ ଘନଶ୍ୟାମା ଯେ । ଭକ୍ତଚରଣ ଦାସ କହଇ ରସେ, କୁବୁଜା ମନ—ପେଷି ଗୋବିନ୍ଦ ପାଶେ ଯେ । ଲଜ୍ଜା ଲଗାଇ ଚଢ଼େ ଦିବସ ନିଶି, ବୋଲଇ କେବେ ହେବ ଶ୍ରୀକୃଷ୍ଣ ଦାସୀ ଯେ ।

("ମଥୁରା ମଙ୍ଗଳ"ରୁ ଗୃହୀତ)

— — —

# ମନବୋଧ ଚଉତିଶା

## ଭକ୍ତଚରଣ ଦାସ

କହଇ ମନ ଆରେ ମୋ ବୋଲ କର
କଳା-ଶ୍ରୀମୁଖ ବାରେ ଦେଖିବା ଚାଲ ରେ ।
କେତେ ଦିନକୁ ମନ ବାନ୍ଧନ୍ତୁ ଆଶ
କି ଯେନ୍ନ ପିବୁ ତୋର ଛୁଟିଲେ ଘଟ ରେ । ୧ ।
ଖଣ୍ଡି ଯେ ଖଣ୍ଡି ତୋର ପିଣ୍ଡରୁ କାଟି
ଖାଉଣ ଥିବେ ଶ୍ୱାନ ଶୃଗାଳ ବାଣ୍ଟି ରେ ।
ଖାଟ ପଲଙ୍କେ ମନ ଶେଯାଇ ଶୋଉ
ଖଳ ଦୁର୍ଗନ୍ଧ ହେବ ଏ ତୋର ଦେହୁ ରେ । ୨ ।
ଗଲେଣି ତୋ ସଙ୍ଗରୁ ଯେତେକ ଜନ
ଗଣ୍ଠିରେ ବାନ୍ଧି ନେଲେ କେ କେତେ ଧନ ରେ ।
ଗୁରୁ ଗୋବିନ୍ଦ ନାମ ତୁଣ୍ଡେ ନ ବୋଲୁ
ଗାଢ଼େ ମର୍କିଣ ନଟେ୍ୟ ଧନ ଅର୍ଜିଲୁ ରେ । ୩ ।
ଘର ବୋଲି ଅର୍ଜିଛୁ ଯେତେ ପଦାର୍ଥ
ଘଟ ଛୁଟିଲେ ତୋତେ ବୋଲିବେ ଭୂତ ରେ ।
ଘର ଘରଣୀ ଦେହ କାଳାଉ ଥିବେ
ଯେନ୍ନ ବନ୍ଧୁ କୁଟୁମ୍ବ ଶୁଦ୍ଧ ହୋଇବେ ରେ । ୪ ।
ଉଦ୍ଧାର ହେବୁ ଯେବେ ଭବ-ସାଗରୁ
ଉପାୟ କର ଭଜ ଏବେ ଶ୍ରୀଗୁରୁ ରେ ।
ଊଣା ହେଉଛୁ ଦିନ ଦିନ ଆୟୁଷ
ଆଉ ଏଣିକି ଅଛୁ କେତେ ବୟସରେ । ୫ ।
ଚନ୍ଦ ପ୍ରତିମା ପ୍ରାୟେ ଦିଶୁ ସୁନ୍ଦର
ଚଉ ଭିତରେ ଦେଖ କି ନାରଖାର ରେ ।
ଚର୍ମ ବେଢ଼ିଛୁ ସିନା ଚଉରଶିକି
ଚଢ଼ି ତୁ ଦେଖ ନୀଳ-ଗିରିବାସୀଙ୍କି ରେ । ୬ ।

ଗୁରୁ ଦେହକୁ ମନ କରନ୍ତୁ ସଜ
ଗନ୍ଧ କପଟ ତେଜ ଗୋବିନ୍ଦ ଭଜ ରେ ।
ଘୁଙ୍ଗୁରେ ନାହିଁ ଘୋଟେ ବୋଲିବେ ମଡ଼ା
ଘିଏ ଶ୍ରୀ କାଠ ହେବ ତୋପାଇଁ ଲୋଡ଼ା ରେ । ୭ ।
ଯମ ଯେ ନ ଜାଣେ ବାନ୍ଧିତ ଝୁବା
ଙ୍ଗଇବୁ ବୋଲି ମନେ କରନ୍ତୁ ଅବା ରେ ।
ଚଟଣ ହେଁ ଏଥେ କେହି ନାହିଁ ଅମର
ଜଗନ୍ନାଥଙ୍କୁ ଭଜ ହେବୁ ଉଦ୍ଧ ର ରେ । ୮ ।
ଛୋଲି କନ୍ଥା, ପାଗ୍ରେଡ଼ା ପିନ୍ଧାଲୁ ରସୁ
ଝାଡ଼ ଫସାରେ ମନ ନ ବୁଝି ପଶୁ ରେ ।
ଝୁଣ୍ଟି ପଡ଼ିଲେ ଉଠି ପାରିବୁ ନାହିଁ
ଝଡ଼ିଲା ପତ୍ର ବୃକ୍ଷେ ଲାଗିବୁ କାହିଁ ରେ । ୯ ।
ଞଗି ଧବଳେ ଅଧୂ ନୋହୁ ନା ମନ
ନିଦ୍ରାରେ ଦେଖୁଅଛୁ ଯଥା ସ୍ୱପନେ ରେ
ନ ଯିବେ ସଙ୍ଗେ କେହି ଯିବୁ ତୁ ଏକା
ନାମ ମାତ୍ର ଅଟଇ ପଥକୁ ସଖା ରେ । ୧୦ ।
ଟାଣି କରନ୍ତୁ ମନ ସବୁ ମେଦର
ଟେଳି ପଡ଼ିଲେ କେହି ନୋହେ କାହାର ରେ ।
ଟେରା ଭିତରେ ଯେଉଁଲୋ ଅପୂର୍ବ ନାଗ
ଟୋପ ଚଉଁରା ଅଛୁ ତୋ ଦେହେ ପୂରି ରେ । ୧୧ ।
ଠିକେ ମୁଁ କହୁଅଛୁ କର ମୋ କଥା
ଠିକେ ତୋ ଦେହେ ଅଛୁ ଶୂନ୍ୟ ଦେବତା ରେ ।
ଠକ ପିବୁଟି ଠିକ ମୂଣ୍ଡ ପଡ଼ିଲେ
ଠିକେଣ ଗୁରୁସେବା କର ତୁ ଭଲେ ରେ । ୧୨ ।
ଡାକ କହୁଛୁ ମନ ଡାକ ଗୋବିନ୍ଦ
ଡର ଜଞ୍ଜାଳ ଯାଉ ତୋହର ହୃଦ ରେ ।
ଡେର ଆନ୍ତ୍ର ତ୍ରିବଣ ଭକ୍ତ ଡାକୁକୁ
ଡଙ୍ଗା ଯେହ୍ନେ ଜଳରେ ଘୁହାଁ ପଛକୁ ରେ । ୧୩ ।
ଢୋଲ ଯେସନେ ଢାଉଁ ଢାଉଁ ବାଜଇ
ଢଳେ ତହିଁ ଭିତରେ କଛୁ ହିଁ ନାହିଁ ରେ ।
ଢାଙ୍କି ରହୁଛୁ ଦେହ ସବୁଟି ତୁଚ୍ଛ
ଢଳି ପଡ଼ିଲେ ସବୁ ହେବଟି ମିଛ ରେ । ୧୪ ।

ଏଣେ ତୁ ଦେଇଥିଲେ ତେଣେ ପାଇବୁ
ଅଣ ଆମ୍ବୃତ ଦେଲେ କି ପେନ ପିବୁ ରେ ।
ଅଣ-ନିଃଶ୍ୱାସୀ ହୋଇ ରହିବୁ ଭବନେ
ଅନେକ ଦୁଃଖ ଦେବେ ଯମ-ଭୁବନେ ରେ । ୧୫ ।
ତୁ ଯେ ବୋଲୁ ମୋହର ଅର୍ଜିବି ଧନ
ତୋ ଦେହ ନୋହେ ତୋର ଦେଖ ଏ ମାନ ରେ ।
ତୋହର ସଙ୍ଗେ ମନ ଗଲେଣି କେତେ
ତୁ ମିଥ୍ୟା କଥାକୁ ତ ଯାଉ ପରତେ ରେ । ୧୬ ।
ଥିଲେ ଏ ସଂସାରେ ଯେତେ ନୃପତି
ଅସ୍ତୁ କରି କେ ଭୋଗ କଲା ଏ ପୃଥ୍ୱୀ ରେ ।
ଯୋଇଲୁ ଧନ ତୋର ଖଣ୍ଡେ ଖାଇବେ
ଆନେ ତୋହର ଘର କରି ରହିବେ ରେ । ୧୭ ।
ଦେହେଁ ପୂରଛି ତୋର ଅଶେଷ ରୋଗ
ଦନା ଗୃହକେ ପିନା ଏ ସୁଖ ଭୋଗ ରେ ।
ଦଣ୍ଡେହେଁ କେହୁ ତୋତେ ରଖିବ ନାହିଁ
ଦଣ୍ଡ ଯେ ଥିବ ଯମ ଡଗର ନେଇ ରେ । ୧୮ ।
ଧର୍ମ ଅଧର୍ମ କଥା ନ ଜାଣୁ ତୁହି
ଧନ୍ଦ ହେଉଛୁ ଧନ ଅର୍ଜିବା ପାଇଁ ରେ ।
ଧୋକା ରହିଲେ ଧନ୍ଦା ଫିଟିବ ନାହିଁ
ଧର୍ମରେ ଆତ୍ମଘାତ ହେଉଛୁ ମନ୍ଦା ରେ । ୧୯ ।
ନିନ୍ଦିତ କର୍ମ କଲେ ନିନ୍ଦା ପାଇବୁ
ନରକେ ପଡ଼ି କେତେ ଦୁଃଖ ସହିବୁ ରେ ।
ନିମିଷେ ମାତ୍ର ମୁଖେ ନ ବୋଲୁ ହରି
ନାଶ ହେଉଛୁ କମ୍ପା ଅଛୁ ଆବୋରି ରେ । ୨୦ ।
ପାଇଲେ ଜଣି ଯେହ୍ନେ ଭବ ଉଦଧି
ପଦ୍ମଲୋଚନ ପ୍ରଭୁ ଦେହେ ଉଦଧି ରେ ।
ପ୍ରଭୁଙ୍କୁ ଆଶ୍ରେ କର ତରିବୁ ହେବେ
ପାଦପଦ୍ମରେ ଚିତ୍ତି ଦିଅ ତୁ ଏବେ ରେ । ୨୧ ।
ଫୁଲ ଯେସନେ ଫୁଲେ ଫୁଲେ ବହିରେ
ଫୁଲ ସମୀରେ ଆଉ ନ ଦିଶେ ତାରେ ରେ ।
ଫଳ ସଂସାରେ ଲଭ ହରି ଭଜନ
ଫାଶ ଗଳାକୁ କମ୍ପା କରୁଛୁ ଧନ ରେ । ୨୨ ।

ବେଳକୁ ବେଳ ତୋତେ କହୁଛି ମୁହିଁ
ବାନ୍ଧିଣ ନେବ ଯମ କି ଦୁଃଖ ଦେଇ ରେ ।
ବିକଳେ କାନ୍ଦୁଥିବୁ ଆକୁଳ ହୋଇ
ବେଳହୁଁ ଆଶ୍ରେ କରି ଭଜ ଗୋସାଇଁ ରେ । ୨୩ ।
ଭେଳା ବୁଡ଼ିବ ହେଲା କଲେ କାନ୍ଦୁଛି
ଭଙ୍ଗା ନାବରେ କେ ବା ସିନ୍ଧୁ ତରିଛି ରେ ।
ଖିଡ଼କି ନିକଟ ସେ ଅଟବେ ଦୂର
ଭକତ ଦାସ କହେ ଜୀବନ ସ୍ଥିର ରେ । ୨୪ ।
ମିଥ୍ୟା-ମାୟା ସଂସାର ନୋହେ କାହାର
ମଲ ବୋଲିଣ ଦିନେ ପଡ଼ିବ ହରି ରେ ।
ମଶାଣିରେ କେହି ରହିବ ନାହିଁ
ମଲ ବୋଲି କାନ୍ଦିଲୁ ମରିବୁ ତୁହି ରେ । ୨୫ ।
ଜନମ ହେଲେ ପ୍ରାଣୀ ଅବଶ୍ୟ ମରି
ଯଶ ରଖିବୁ ଯେବେ ଭଜ ଶ୍ରୀହରି ରେ ।
ଯମ ବାନ୍ଧି ନେଇଛି କେତେ ମେଲାଣି
ଜଗନ୍ନାଥ ମହିମା ଏତିକି ଆଣି ରେ । ୨୬ ।
ରଙ୍ଗ ପସରା ସିନା ଭବ-ସାଗର
ରଙ୍ଗ ଭିତରେ ଅଛି କି ନାରଖାର ରେ ।
ରୂପ ପ୍ରତିମାକୁ ତୁ ପରତେ ନ ଯା
ରଖିବେ ନାହିଁ କେହି ରାଜାପରଜା ରେ । ୨୭ ।
ଲୋଚନେ ଦେଖି କର୍ଣ୍ଣେ ଶୁଣୁଛୁ ନିତି
ଲୋଭ କରି ଅର୍ଜିଲୁ ଧନ ସମ୍ପତ୍ତି ରେ ।
ଲୋଭଟି ସବୁ ନାଶ କରଇ ମନ
ଲୋଡ଼ିଲେ ନ ପାଇବୁ ଆଉ ଜୀବନ ରେ । ୨୮ ।
ବୃଥାରେ ବହିଅଛୁ ଦୁର୍ଲ୍ଲଭ ଦେହ
ବୃଥା-ବଳେ ଆଉ ନ ବଳା ସ୍ନେହ ରେ ।
ବୁଡ଼ିଯିବଟି ମୂଳ ଲାଭ ସରବ
ବେଳହୁଁ ଆଶ୍ରେ କରି ଭଜ ମାଧବ ରେ । ୨୯ ।
ଶ୍ରୀକୃଷ୍ଣ ପାଦପଦ୍ମେ ଦିଅ ତୁ ମନ
ସରିଲେ ନ ପାଇବୁ ଆଉ ଜୀବନ ରେ ।
ଶ୍ରୀକୃଷ୍ଣ ନାମଗୋଟି କର ଭଜନ
ଶ୍ରୀକୃଷ୍ଣ ପଦ୍ମପାଦେ କର ତୁ ଧ୍ୟାନ ରେ । ୩୦ ।

ସନ୍ତୋଷ ଚିତ୍ତେ ତୁହି ହରିଙ୍କି ଭଜ
ସଂସାରେ ପଡ଼ି ଆଉ ନ ପାଅ ଲାଜ ରେ ।
ସବୁଟି ମିଛ ହରି ନାମଟି ସତ
ଶ୍ରୀକୃଷ୍ଣ ପାଦପଦ୍ମେ ଦିଅ ତୁ ଚିତ୍ତ ରେ । ୩ ।
ସତ୍ୟ ମଣୁଛୁ ତୁହି ଭବସାଗର
ସବ ଯାଉଛୁ ପରମାତ୍ମା ତୋହର ରେ ।
ସଂନ୍ତୋଷ ହୋଇ ତୁଚ୍ଛେ ଭଜ-ଶ୍ରୀହରି
ଶୋକ-ସାଗରୁ ଯେବେ ହୋଇବୁ ପାରି ରେ । ୪ ।
ହୁଡ଼ିଲେ ଯେତେ ଜନ ହରିନାମକୁ
ସ୍ୱାନଗଧଙ୍କ ଗଲେ ବୁଡ଼ି ତଳକୁ ରେ ।
ହଜିଲେ ଦେହ ଆଉ ପାଇବୁ ନାହିଁ
ହାଟ ବସାଉଥିବେ ତୋ ଦେହ ପଞ୍ଚେ ରେ । ୫ ।
ଧନ୍ୟ ଦୁର୍ଲ୍ଲଭ ଦେହ ହୋଏ ଅମୂଷ
ଧନ୍ୟ ନ ଦିବ ନାମ ହୃଦରେ ଯେଣୁ ରେ
ଛାର ଦେହକୁ ମନ ନ ଯା ବିଶ୍ୱାସ
ଛାର ବୁଦ୍ଧି କହେ ଭକତ ... ରେ । ୬ ।

---

# ଜିଜ୍ଞାସ୍ୟ

## ଗୋପାଳକୃଷ୍ଣ ପଟ୍ଟନାୟକ

---

(ରାଗ ଭୈରବୀ, ରୂପକ ତାଳ)

ଅନୁସରିତ, ପ୍ରଭୋ ! କାଳିୟାକ ଗଲା ସରିତ,
ଜଣବଡରଣ କଲେ କେତେ ଉଣା ହୁଅନ୍ତା କରୁଣା ସରିତ ? (ପଦ)
ଅଶରଣ ଜନ ବନ୍ଧୁପଣ ଯଶ ସଂସାରେ ହୋଇଛି ଉଦିତ
ପଥର ହୋଇ ପଥରେ ପଡ଼ିଥିଲା ଅହଲ୍ୟାକୁ ଦେଲ ତାରି ତ । ୧ ।
ପାଞ୍ଚାଳୀକି ଦୁଃଶାସନ ଘଞ୍ଚାଳିଲା ବଞ୍ଚାଇଲ ବାସ ଦେଇ ତ,
ଘୁଞ୍ଚାଇଲ ନାହିଁ ମୋ ଗ୍ରହ ଜଦନ ଯେ ଗ୍ରଇଲ ନେତ୍ର ବାରିତ । ୨ ।
କାହିଁଥିଲା ତଳ କାହିଁ ଥିଲା ନଳ ପଲକ ପତନ ନୋହୁଣୁ,
ଛୁଡ଼ିଗଲା ମଥା ରହିଗଲା କଥା ଡାକିଲା ମାଧବେ କରି ତ । ୩ ।
କାଳ କିଙ୍କର ଭୟରେ ଅଜାମିଳ ପୁତ୍ରୋପଚାରରେ ଡାକିତ,
ପରମ ପଦ ପାଇଲା ଆପଣଙ୍କ ନାମ ମହିମା ଏପରି ତ । ୪ ।
ନିରୁପାୟି କୃପା କର ବୋଲି ବିଧି ଭବାବଦରେ ଆଛି କଥିତ,
ମୁଁ କଲି ଦୋଷ କି ନାଶିଛ ତ ବକୀ ବିଷ ପିଆଇ ତା ଦୁରିତ । ୫ ।
ଗୋପାଳକୃଷ୍ଣ-କହେ ଜଗନ୍ମଙ୍ଗଳ ଯାତ୍ରା କରିବ ଚିନ୍ତି ଚିତ୍ତ,
ଆପଣା ଦୟାଳୁ-ପଣକୁ ବିଳ ମୋ ଦୁଷ୍କୃତ ନୂହଇ ବାଗି ତ । ୬ ।

---

# ବାତ୍ସଲ୍ୟ

## ଗୋପାଳକୃଷ୍ଣ ପଟ୍ଟନାୟକ

---

(ରାଗ ମାୟାମାଳବଗୌଡ଼, ରୂପକ ତାଳ)

ଉଠିଲୁ ଏଡ଼େ ବେଗି    କାହିଁକି ରେ ଦୁଃଖିଧନ !
    ଦଧି ମନ୍ଥାଇ ଦେବୁ ନାହିଁ କି ରେ । ପଦ ।
ଦେହ ପାଶୋର ଦଣ୍ଡେ    ନିଦ ନ ଗଲୁ ଏଡ଼େ
    ବଟୋଳ ହେଲୁ ମୋର ପାଇଁ କି ରେ । ୧ ।
ଖେଳରୁ ରାମ ତୁଲେ    ପନ୍ତେ ରାଢ଼ ପାଇଲେ
    ଶୁଆଇ ଦେବ ଗୀତ ଗାଇ କି ରେ । ୨ ।
ମନ୍ଥିବ ମୁଁ କେମନ୍ତ    ଝୁଆ ଦଣ୍ଡରୁ ହାତ
    ଛାଡ଼ ଦେଉଛୁ ସର ଖୋଇ କି ରେ । ୩ ।
ଆହା ଏ କି ପ୍ରମାଦ    ଛନ୍ଦନା ବାରୁ ପାଦ
    ଡାକ ଯା ବଳରାମ ଭାଇ କି ରେ । ୪ ।
ମନ୍ଥନ ଘଟେ ହାତ    ପୂରାଇ ନବନୀତ
    କାଢ଼ୁ ବୋଲନ୍ତ ହେଲୁ ବାଇ କି ରେ । ୫ ।
ଲୁଚ୍ଛା ହାତଟା ଖାଇ    ନାଚୁଛୁ କାହିଁପାଇଁ
    ଶୁଖିପିବୁ ନ ରାହା ଛୁଇଁକି ରେ । ୬ ।
ଗୃହ-କୃତ୍ୟ ପକାଇ    ବସିଥିବ ଏକାଇ
    କଣି ଢନ ତୋତେ କାଖେଇ କି ରେ । ୭ ।
ପଣନ୍ତରେ ବଦନ    ପୋଛୁ ଦେଲେ ଚୁମ୍ବନ
    ଗୋପାଳ କୃଷ୍ଣ ଚନ୍ଦ୍ରେ ଦୁହିଁକି ରେ । ୮ ।

———

# ଲଳିତାଙ୍କର ଛନ୍ଦୋକ୍ତି

## କବିସୂର୍ଯ୍ୟ ବଳଦେବ ରଥ

( ରାଗ—ତୋଡ଼ିପରଜ—ଏକତାଳୀ )

ଫାଟି ପଡ଼ିବାର ନିକୁଞ୍ଜ-ଘର
ଶ୍ରମୁଁ ମୋ ଚରଣ ତଳ
ଫରୁଷ ଖୋର ଆଖରକୁ ହେବାର
ଏହୁ ଏକା ଏଥୁ ଫଳରେ, କିଶୋର !
ଫିଟିଗଲା ଯେ ସନ୍ଦେହ
ଫୁଲିଗଲୁ ଫୁଲଲଲନ ରସିକା ଜାଣି ପରା ଶ୍ୟାମ ସ୍ନେହରେ ।୧।

ଫନ୍ଦାଇ ନାନା ବିନସ୍ତେ କହୁ ଦନ୍ତେ ତୃଣ ଧରିବାର ଗଲା
ଫଟା କପାଳରେ କୁଟିଳ-ହୃଦୟା
ବୋଲାଇବା ଲେଖା ଥିଲାରେ, କିଶୋର !
ଫନ୍ଦାଧନ ତୁ ତ ମୋର
ଫରିଆଦ ଖାଁହି ତୋନାମେ କରିବ ନିନ୍ଦାକଲେ ପଛେ କର ରେ ।୨।

ଫକୁଆରେ ପରି ହୃଦୟରେ ଭରି
ରଖ ସେ ନୀଳମଣିକି
ଫହଜ ଭୁଲେ କୁଞ୍ଜଦ୍ୱାରେ ରଖାଅ
ଦେହବଲ୍ଲୀଧାରିଣୀକରେ, କିଶୋର !
ଫରମାସ ମନେ ମନେ
ଫେଇ ଦଅ ତୁ ସେ ଆଦର ମୁଁ ଯେବେ ଯିବେ ଯିବ ସେ ଦାଗକୁ ଦନେ ରେ ।୩।

ଫଳିତ ହୋଇ ଦୂରରେ ଥିଲେ ତୋତେ
ଭଳିତ ଥିବାର ସତ
ଫେଡ଼ନ୍ତୁ ତୋ କଷ୍ଟ ସୁଖ ଦେଇ ଅଷ୍ଟ-
ଶ୍ରୁତି ଏ ଆମ୍ଭ ବାଞ୍ଛିତରେ, କିଶୋର !
ଫୁରୁଣା ହୋଇ ତୁ ରସ
ଫେରିଆସି ମାଟି ଆମ୍ଭ ଆଗେ ନେତ୍ର-କଣ୍ଟୁ ନୀର ନ ବରଷରେ ।୪।

ଫୋଟକା ହେଉଛୁ ଶ୍ରୀଅଙ୍ଗେ ସିଞ୍ଚିଲେ
କର୍ପୂର ଚନ୍ଦନ ବାରି
ଫୁଙ୍କି ଦେଲେ ଉଡ଼ିଯିବା ପରି ସଢ଼ି
ଅଛୁଟି ତନୁ-ବଲ୍ଲରୀ ରେ କିଶୋର !
ଫୁକାର ନୋହୁ ଜଗତେ
ଫଗୁଆ ନୁହଁ ତୁ ବୋଲେ ଜଗଦେବ ହରିଚନ୍ଦନ ଏ ଗୀତେ ରେ ।୫।

('କିଶୋର ଚନ୍ଦ୍ରାନନ ଚମ୍ପୂ'ରୁ ଗୃହୀତ)

— — —

# ଦକ୍ଷଯାଗ-ନାଶ

## ଜଗନ୍ନାଥ ଦାସ

---

(ମୈତ୍ରେୟ ଉବାଚ)

ନାରଦ-ବାକ୍ୟେ କୋପ ମନେ । ରୁଦ୍ର ଉଠିଲେ ସାବଧାନେ ॥
ଧାଇଁଲେ ରୁଦ୍ର ଗଣ ଘେନ । ଚଳନ୍ତେ କମ୍ପଇ ମେଦିନୀ ॥
ଦକ୍ଷର ଯଜ୍ଞ ନାଶ ଅର୍ଥେ । କୋପ ବସିଲା ରୁଦ୍ର ଚିତ୍ତେ ॥
ସକଳ ପାରିଷଦଗଣେ । ନାନା ଆୟୁଧ ତୀକ୍ଷଣ ବାଣେ ॥
ଅତି ଅସଂଖ୍ୟ କୋପଭର । ଧାଇଁଲେ ଘୋର ନାଦ କରି ॥
ରୁଦ୍ର ବଦନେ କୋପ ଦେଖି । ବିବୁଧେ ନିଦଶ ଉପେକ୍ଷି ॥
କମ୍ପିଲେ ରୁଦ୍ର ବୋଲ ଶୁଣି । ମହାପ୍ରଳୟ ପ୍ରାପ୍ତେ ମଣି ॥
କୋପେ କାମୋଡ଼ି ଓଷ୍ଠ ପାଟି । ପ୍ରଚଣ୍ଡ ଦିଶଇ ଭ୍ରୁକୁଟୀ ॥
ଜଟା କଳାପେ ଅଗ୍ନି ଜଳେ । ଦେଖି କମ୍ପିଲେ ଦିଗପାଳେ ॥
ରୁଦ୍ରର ଜଟାଭାର ମଧ୍ୟେ । ଫୁରୁଷେ ଉଠେ ଘୋରନାଦେ ॥
ହସେ ଗମ୍ଭୀର ଘୋର ସ୍ୱନେ । ରୁଦ୍ରଗଣଙ୍କ ଅବଧାନେ ॥
କୋପେ ଅଧର ସେ କାମୋଡ଼ି । ରୁଦ୍ରଙ୍କୁ କହେ କରଯୋଡ଼ି ॥
ସହସ୍ର ବାହୁ ମେଘସ୍ୱନେ । ଅନଳ ଜଳଇ ନୟନେ ॥
କୋଟିଏ ସୂର୍ଯ୍ୟ ତେଜ ଯେହ୍ନେ । ଦେଖି ପଳାନ୍ତି ସର୍ବଜନେ ॥
କରାଳ ଦଂଷ୍ଟ୍ରା ଶୋହେ ତୁଣ୍ଡେ । ଅଗ୍ନି ଜଳଇ ଶିଖା ଖଣ୍ଡେ ॥
ନାନା ଆୟୁଧ ଦିଶେ କରେ । ମୁଣ୍ଡମାଳା ଯେ ଲମ୍ବେ ଉରେ ॥
ରୁଦ୍ରଙ୍କୁ କହେ କର ଯୋଡ଼ି । କହଇ ଅଧର କାମୋଡ଼ି ॥
କହ ତୁ କି କରିବି ମୁହିଁ । ରୁଦ୍ର କହନ୍ତି ତାକୁ ଚାହିଁ ॥
ତୁ ମୋର ଗଣଙ୍କ ଈଶ୍ୱର । ତୁ ଏବେ ମୋର ବୋଲ କର ॥
ଦକ୍ଷର ପ୍ରାଣ-ଯଜ୍ଞ ସଙ୍ଗେ । ବିନାଶ କର ରଣ ରଙ୍ଗେ ॥
ତୁ ମୋର ଅଂଶ ଆତ୍ମାରୂପୀ । ସହସ୍ର ଭୁଜ ଶୂନ୍ୟେ ବ୍ୟାପୀ ॥
ଦକ୍ଷର ଯଜ୍ଞ ନାଶ କର । ଏହାର ପ୍ରାଣ ବେଗେ ହର ॥
ଏମନ୍ତ ରୁଦ୍ର-ଆଜ୍ଞା ପାଇ । କୋପେ କମ୍ପିଲା ତାର ଦେହୀ ॥
ଜଳଇ ଅତି କୋପାନଳେ । ନମିଲା ରୁଦ୍ର ପାଦ ତଳେ ॥
ସ୍ୱଭାବେ ରୁଦ୍ର ଆତ୍ମା ସେହି । ତାର ମହିମା କେ ଜାଣଇ ॥

ଗର୍ଜଇ ଭୟଙ୍କର ନାଦେ । ବେଗେ ଧାମଇଁ ବେନି ପାଦେ ॥
ଟଳି ଟୁଳାଇ ଦକ୍ଷ କରେ । ନୂପୁର ବାଜଇ ପଦ୍ମରେ ॥
ଧାମଇ ପବନନ୍ତୁ ବେଗେ । ରୁଦ୍ର କୋପେ ଉତ୍ତର ଦିଗେ ॥
ଶବଦ ଦଶ ଦିଗ ପୂରେ । ଧୂଳି ଉଡ଼ଇ ପାଦଭରେ ॥
ବିପ୍ରେ ଯେ ଥିଲେ ଯଜ୍ଞଶାଳେ । ଧୂଳି ଦେଖନ୍ତି ଅନ୍ତରାଳେ ॥
ଉତ୍ତର ଦିଗେ ରେଣୁ ଦେଖି । ଉଠିଲେ ସୁଯଜ୍ଞ ଉପେକ୍ଷି ॥
ଉତ୍ତର ଦିଗକୁ ଅନାଇ । କହନ୍ତି ଏକ ଆରେ ଚାହିଁ ॥
ଦେଖ ଦିବସେ ଘୋରତମ । ଦିଗ ନ ଦିଶେ ବାତ ଭ୍ରମ ॥
ଏମନ୍ତ ଦେଖି ବିପ୍ରନାରୀ । ଦେଖନ୍ତି ହସ୍ତେ ହସ୍ତ ଧରି ॥
କହନ୍ତି କିଏ ତମଘୋର । ଦିଶଇ ଅତି ଭୟଙ୍କର ॥
ପ୍ରଚଣ୍ଡ ବହଇ ପବନ । ତମେ ଆଚ୍ଛାଦିଲା ଗଗନ ॥
ଗୋରୁ-ଚରଣ-ଧୂଳି ନୋହେ । କିଏ ତମସ କାହୁଁ ହୁଏ ॥
ଆଜ କି ପ୍ରଳୟ ହୋଇବ । ବାମ କି ହୋଇଲା ଦଇବ ॥
ପ୍ରସୂତି ଆଦି ବାମା ଯେତେ । ଉଠି ଚାହାନ୍ତି ଦୁଃଖ ଚିତ୍ତେ ॥
ଏମନ୍ତେ ଶୁଣ ନରନାଥ । ଅଦ୍ଭୁତ ରୁଦ୍ରର ଚରିତ ॥
ପ୍ରଚଣ୍ଡ ମଣ୍ଡଳ ଆକାରେ । ତୀକ୍ଷଣ ଶୂଳ ଧରି କରେ ॥
ରୁଦ୍ର ଧାଇଁଲେ ଅତି ବେଗେ । ଦେଖି ପଳାନ୍ତି ଦିଗସ୍ତଗେ ॥
ସହସ୍ର ହସ୍ତ ଊର୍ଦ୍ଧ୍ୱେ କରି । ନଟଙ୍କ ପ୍ରାୟେ ବେଶ ଧରି ॥
ଚଣ୍ଡାଟ୍ଟହାସ୍ୟ ଶୋହେ ତୁଣ୍ଡେ । ଯେହ୍ନେ ବିଜୁଳି ମେଘ ଖଣ୍ଡେ ॥
ଅସଂଖ୍ୟ ତେଜ ଯୋଗ ବଳ । ଦିଶଇ ଭ୍ରୂକୁଟି କୁଟିଳ ॥
କରାଳ ଦଂଷ୍ଟ୍ରା ଶୋହେ ତୁଣ୍ଡେ । ତେଜେ ନକ୍ଷତ୍ରଗଣ ଗଣ୍ଡେ ॥
ଦକ୍ଷକୁ ଚାହିଁ ସଭାଜନେ । କହନ୍ତି ଅତି ଦୁଃଖ ମନେ ॥
ଦେଖ ଏହାର କର୍ମଫଳ । ଆଜି ତ ନାଶିଲା ସକଳ ॥
ଉତ୍ପାତ ଭୟେ ଦୁଃଖମନେ । ଭୟେ ଲୁଚିଲେ ସର୍ବଜନେ ॥
କେ କହୁ ଜନଙ୍କ ବିକଳ । ତକ୍ଷଣେ ମିଳି ରୁଦ୍ରବଳ ॥
ନାନା ଆୟୁଧ ଧରି କରେ । ବେଢ଼ିଲେ ବେଗେ ଯଜ୍ଞଘରେ ॥
ପିକ ପିଙ୍ଗଳ ଦିଶେ ବର୍ଣ୍ଣ । ସକଳେ କୁମାର-ଆନନ ॥
ଶବଦେ ଗଗନ ଉଚ୍ଛୁଳେ । ବେଗେ ମିଳିଲେ ଯଜ୍ଞଘରେ ॥
କେହୁ ଭାଙ୍ଗିଲେ ଗୃହ ବାସ । ପତ୍ନୀ ଭୁବନ ଅବଶେଷ ॥
କେ ପାକଶାଳେ ପ୍ରବେଶନ୍ତି । କେ ଯଜ୍ଞପାତ୍ରକୁ ଲୁଟନ୍ତି ॥
ଯେ ଯଜ୍ଞ କୁଣ୍ଡରେ ମିଳନ୍ତି । ମୂତ୍ର ପୁରୀଷ ଉତ୍ସର୍ଗନ୍ତି ॥
କେ ବହୁ ଘୋରନାଦ କଲେ । ଯଜ୍ଞ ମେଖଳା ବେଦ ତୁଲେ ॥

ଗର୍ଜିଲେ ଅତି କୋପଭରେ । ଶୂଳ ବୁଲାଇ ଦକ୍ଷ ଘରେ ॥
କେ ଧାଇଁ ମୁନିଙ୍କ ଉପରେ । ତର୍ଜନ ଅତି କୋପଭରେ ॥
ନାସ୍ୱଗଣଙ୍କ ମଧ୍ୟେ ପଶି । ଗ୍ରହ ସଙ୍ଗତେ ଯେସ୍ନେ ଶଶୀ ॥
ଦେବେ ପଳାନ୍ତି ତାହା ଦେଖି । ଯଜ୍ଞର ବିଭାଗ ଉପେକ୍ଷି ॥
ତାହାଙ୍କୁ ରୁଦ୍ରଗଣେ ଧରି । ଭୃଗୁ ସମେତ ବନ୍ଦୀ କରି ॥
ଭୃଗୁକୁ ମହିମା ନ ଦାନ୍ଧେ । ତା ଦେଖି ପ୍ରଜାପତି କାନ୍ଦେ ॥
ଦକ୍ଷକୁ ବୀରଭଦ୍ର ଧରି । ପଶୁର ପ୍ରାୟ ବନ୍ଧୀ କରି ॥
ରଣେ ଶତ୍ରୁଗଣଙ୍କୁ ଧରେ । ଓଷ୍ଠ କାମୋଡ଼ି କୋପଭରେ ॥
ଭୃଗୁକୁ ଧରି ନନ୍ଦୀଶ୍ୱର । ହୁଁକାର ନାଦେ ମହାଘୋର ॥
ସେ ଯଜ୍ଞେ ଯେତେ ଜନ ଥିଲେ । ଋତ୍ୱିଜ ଋଷି ବିପ୍ର ଭୁଲେ ॥
ରୁଦ୍ର ଦେବତା ତେଜ ଦେଖି । ଗାଜିଲେ ଯଜ୍ଞକୁ ଉପେକ୍ଷି ॥
ଭୃଗୁ ଯେ ଯଜ୍ଞ ହୋମ କରି । ଘୃତ ହୁତାନ୍ତ ସ୍ରୁବ ଧରି ॥
ତାହାଙ୍କ କେଶ ବାମ ହସ୍ତେ । ବେଗେ ଧରିଲେ ବିଶ୍ୱନାଥେ ॥
ତାହାଙ୍କ ଧାଢ଼ୀ ବକ୍ଷ କରେ । ରୁଦ୍ର ଉପାଡ଼େ କୋପଭରେ ॥
ସ୍ୱଭାବେ ପଦ୍ମଯୋନି ବଳ । ଯେ ଜାତି ଦେଖାଇ ହସିଲ ॥
ଓପାଡ଼ି ଭୃଗୁ ଲମ୍ବ ଜାଢି । ତକ୍ଷଣେ ଭୂମିତଳେ ପାଡି ॥
ଚକ୍ଷୁ ଉପାଡ଼େ ନଖ ଅଗ୍ରେ । ପୂର୍ବର ଶାପ ବଇରାଗେ ॥
ମଣି ଯେ ଶାପ ଦେଲ କାଳେ । ଅପମାନିତ କୋପାନଳେ ॥
ଦନ୍ତ ଦେଖାଇ କରି ହସେ । ସେ କଥା ସ୍ମରି ମହାରୋଷେ ॥
ମୁଷ୍ଟି ପ୍ରହାରି ବାମ କରେ । ଦନ୍ତ ଝାଡ଼ିଲେ କୋପଭରେ ॥
ଦକ୍ଷର ହୃଦେ କରି ଭିଡ଼ି । ରୁଦ୍ର ଯେ ଅଧର କାମୋଡ଼ି ॥
ଭୂମିରେ ପଡ଼ିଲେ ଉନ୍ମନେ, । କେ ତାହା କହିବ ବଚନେ ॥
ଅଜସ୍ଥ ଏହାର ଶଙ୍କରଁ । ଦେଖି ବିସ୍ମିତ ଶୂଳଧର ॥
ଅକ୍ଷୟ ହଳ ତାର ଗତି । ବିସ୍ମୟେ ହଳ ପଶୁପତି ॥
ତୀକ୍ଷ୍ଣ ଖଡ଼ଗେ ଛେଦି ଶିର । ଈଶ୍ୱର ହୋଇଲେ ବାହାର ॥
ଶିର ପଡ଼ିଲା ଅଗ୍ନିକୁଣ୍ଡେ । କୁଳେ ରହିଲା ମୃତ୍ୟୁ ପିଣ୍ଡେ ॥
ପିଶାଚଗଣ ଘେନି ସଙ୍ଗେ । ରୁଦ୍ର ନାଚନ୍ତି ରଣରଙ୍ଗେ ॥
ଦକ୍ଷ ସଂପଦ ନାଶ କରି । ଦକ୍ଷିଣ କରେ ଶୂଳ ଧରି ॥
ଶଙ୍କର ହୋଇଲେ ବାହାର । ଦେଖି କମ୍ପିଲେ ସୁରନର ॥
ସେ ରୁଦ୍ର ଚରଣ ପଙ୍କଜେ । ବ୍ରାହ୍ମଣ ଜଗନ୍ନାଥ ଭଜେ ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଚତୁର୍ଥସ୍କନ୍ଧେ ଦକ୍ଷଯଜ୍ଞ ଭଗ୍ନୋ ନାମ ପଞ୍ଚମୋଽଧ୍ୟାୟଃ ।

# ଶ୍ରୀରାମଙ୍କ ଦରବାରରେ କାଳଦୂତର ପ୍ରବେଶ

ବିଶ୍ୱନାଥ ଖୁଣ୍ଟିଆ

( ରାଗ—ଚୋଖି )

ଶ୍ରୀରାମଚନ୍ଦ୍ର ରାଜନ, କରନ୍ତେ ଦିନେ ଆସ୍ଥାନ
ବଶିଷ୍ଠ ଋଷି ଜାବାଳି କଶ୍ୟପ ଯେନ
ସୁମନ୍ତ ସୁଦରଶନ ସୁଭଦ୍ର ଭଦ୍ର ପ୍ରସନ୍ନ
ଉଭା ହୋଇ ଅଛନ୍ତି ଯୋଡ଼ିକର ଦେନ
ଏହି କାଳରେ କାଳ ଦୂତ
ସିଂହଦ୍ୱାରେ ପ୍ରବେଶ ହୋଇଲେ ତ୍ୱରିତ ।୧।

ଦ୍ୱାରକି କହେ ବଚନ, ଜଣାଅ ରାମ ରାଜନ
ବୋଲିବ ମହା ମୁନିଙ୍କ ଛାମୁରୁ ଦୂତ
ଆଣିଣ ଅଛି ଉଦନ୍ତ, କହିବ ସବ ବୃତ୍ତାନ୍ତ
ଦର୍ଶନ କର ଛାମୁରେ ଦିବ ତ୍ୱରିତ
ଏହା ଶୁଣି ସେ ଦ୍ୱାରପାଳ
ଜଣାଇଲା ଶ୍ରୀରାମଙ୍କ ଆସ୍ଥାନ ତଳ ।୨।

ଆଜ୍ଞା ଦେଲେ ଯେନ ଆସ, ଦୂତକୁ ଆମ୍ଭର ପାଶ
କେଉଁ ଋଷିଠାରୁ ଆସିଛନ୍ତି ଜାଣିବା
କେଉଁ କାରଣେ ଉଦନ୍ତ, ଦେଇଛନ୍ତି ତପୋବନ୍ତ
ନିର୍ଣ୍ଣୟ କରିଣ ତାଙ୍କ ମୁଖୁ ଶୁଣିବା
ଆଜ୍ଞାପାଇ ଦୂତକୁ ନେଲେ
ଶ୍ରୀରାମ ଛାମୁରେ ନେଇ ତ୍ୱରିତ କଲେ ।୩।

କାଳଦୂତ କହେ ବାଣୀ, ଶୁଣ ଦେବ ରଘୁମଣି
କହିବ ମୋ ସଙ୍ଗେ ତୁମ୍ଭେ କଲେ ନିର୍ବନ୍ଧ
ଏ ସ୍ଥାନ ହେଲେ ନିର୍ଜନ, କହିବି ତାଙ୍କ ବଚନ
ସେ ସମୟେ ଯେ ଆସିବ କରିବ ବଧ
ଶୁଣି ରାମ ନିର୍ବନ୍ଧ କଲେ
ଯେ ଆସିବ ନିଶ୍ଚେ ବଧ ହେବ ବୋଇଲେ ।୪।

ପାଶକୁ ଲକ୍ଷ୍ମଣ ରାଇ ଆଜ୍ଞା ଦେଲେ ରଘୁସାଇଁ
ଦ୍ୱାରେ ରହିଣ କାହାକୁ ଛାଡ଼ି ନ ଦେବ
ଗୁମୁରେ କେହି ନ ଥିବେ କେହି ଆଉ ନ ଆସିବେ
ଯେହୁ ଆସିବ ସେ ନିଶ୍ଚେ ବଧ ହୋଇବ ।
ଆଜ୍ଞା ପାଇ ବୀର ଲକ୍ଷ୍ମଣ
ଜନ ନିରୋଧିଲେ ଦ୍ୱାରେ ରହି ଆପଣ ।୫।

ଦୂତକୁ ଘେନି ଏକାନ୍ତ ହୁଅନ୍ତେ ଜାନକୀକାନ୍ତ
ଦୂତ କହିଲା ପେଷିଲେ କମଳାସନ
କରିଛନ୍ତି ବହୁ ସ୍ତବ ତୁମ୍ଭେ ଅଟ ଦେବ ଦେବ
ମହୀରେ ବିଜେ କରିବ କେତେକ ଦିନ
ବଇକୁଣ୍ଠ ହୋଇଛି ଶୂନ୍ୟ
ଏ ସନ୍ଦେଶ ଶ୍ରବଣ ହୋଇଲା ସମ୍ପୂର୍ଣ୍ଣ ।୬।

ମୁହିଁ କାଳ ହୋଇ ଦୂତ ଗୁମୂରେ କହୁଛି ସତ
ବୈକୁଣ୍ଠକୁ ଏବେ ଦେବ ବିଜୟ କର ।
ରାବଣ ହୋଇଲା ହତ ଦୁଷ୍ଟଙ୍କୁ କଲ ନିପାତ
ରାମ ଅବତାର ଶେଷ ହେଲା ତୁମ୍ଭର
ଶୁଣି ରାମ ଦୂତ ବଚନ
ଆଜ୍ଞା ଦେଲେ ଯିବା ବଇକୁଣ୍ଠ ଭୁବନ ।୭।

ଏକାଳେ ଦୁର୍ବାସା ଋଷି          ସିଂହ ଦ୍ୱାରେ ହେଲେ ଆସି
ଲକ୍ଷ୍ମଣଙ୍କୁ ଗୃହିଣ ବୋଇଲେ ବଚନ
ଦେଖାଅ ରାମରାଜନ          କରିବୁ ଅମ୍ଭେ ଦର୍ଶନ
ନ ଦେଖିଲେ ଦହିବୁଁ ତୁମ୍ଭର ଭୁବନ
ତାହା ଶୁଣି ସୁମିତ୍ରା ସୁତ
ବୋଲନ୍ତି ଯାହା ମାଗିବ ଦେବା ତ୍ୱରିତ ।୮।

ଦର୍ଶନକୁ ଯାହା କହ          ମୁନି ମୂର୍ତ୍ତି ମାତ୍ରକ ରହ
ଠାକୁରଙ୍କ ଛାମୁକୁ ମୁଁ ଯେନଣ ଯିବ
ନୋହିଲେ କସ ବୃତ୍ତାନ୍ତ          କହ ମୋତେ ତପୋବନ୍ତ
ଯାହା ଇଚ୍ଛା କର ତାହା ତ୍ୱରିତେ ଦେବ
ଶୁଣି ମୁନି ବୋଲେ ବଚନ
ରାମ ନ ଦେଖିଲେ ମୁଁ ଦହିବ ଭୁବନ ।୯।

ଲକ୍ଷ୍ମଣ କଲେ ବିଚାର          ମହାକ୍ରୋଧୀ ମୁନିବର
ଏହା କ୍ରୋଧେ ସମସ୍ତେ ଯେ ହୋଇବେ ନାଶ
ମୁଁ ଏବେ ଛାମୁକୁ ଯିବି          ମୁନି କ୍ରୋଧ ଜଣାଇବି
ଏକମାତ୍ର ମୁହିଁ ସିନା ହେବି ବିନାଶ
ଏହା ମନେ କରି ବିଚାର
ଦୁର୍ବାସାଙ୍କୁ ରଖି ସେହି ଗଲେ ଭିତର ।୧୦।

କଥାହେଉନ୍ତେ ତେନିଜଣ          ସେକାଳେ ହେଲେ ଲକ୍ଷ୍ମଣ
ଲକ୍ଷ୍ମଣଙ୍କୁ ଦେଖି ରାମ ହେଲେ ଚକିତ
କହନ୍ତି କି କାର୍ଯ୍ୟ କହ          କଲ ତ ଅତି ଦୁଃସହ
ଆଜ୍ଞା ଭାଙ୍ଗି ଛାମୁକୁ ଆଇଲ ତ୍ୱରିତ
ପୁଣି ଜଣାଇଲେ ସାନୁଜ
ଦୁର୍ବାସା କୋପରେ କରୁଅଛନ୍ତି ଦାହ୍ୟ ।୧୧।

ଦୂତଙ୍କୁ ମେଲାଣି ଦେଲେ          ମୁନି ସଙ୍ଗେ ଭେଟ ହେଲେ
ଦୁର୍ବାସା ବୋଲନ୍ତି ଶୁଣ ରାମ ରାଜନ
ତପକଲୁଁ ବହୁଦିନ          ଅନ୍ନ ନ କଲୁ ଅଶନ
ଏବେ ତୁମ୍ଭ ନଗରେ କରିବୁଁ ଭୋଜନ
ଶୁଣି ରାମ ସାନନ୍ଦ ହେଲେ
ଷଡ଼ରସରେ ଭୋଜନ ମୁନିଙ୍କି ଦେଲେ ।୧୨।

ଭୋଜନେ ହୋଇ ତୃପତି          କଲ୍ୟାଣ କରିଣ ଯତି
ମେଲାଣି ହୋଇଣ ନିଜ ଆଶ୍ରମେ ଗଲେ
ରାମ ହୋଇ ଛନ୍ନ ଛନ୍ନ          ନିରତେ ବ୍ୟାକୁଳ ମନ
ଶ୍ରୀମୁଖ ମଳିନ କରି ଅଶ୍ରୁ ମୁଞ୍ଚିଲେ
ଏହା ଦେଖି ସୁମିତ୍ରା ସୁତ
ଜଣାଇଲେ ମୋତେ ବଧ କର ତ୍ୱରିତ ।୧ ।

ଲକ୍ଷ୍ମଣ ବଚନ ଶୁଣି          ଆଜ୍ଞା ଦେଲେ ରଘୁମଣି
ଆଣ, ଗୁରୁ ବଶିଷ୍ଠ ଜାବାଲି କଶ୍ୟପ
କରିଣ ଥିଲୁ ନିର୍ବନ୍ଧ          ଯେ ଆସିବ ହେବ ବଧ
ଏବେ ସତ୍ୟ ଭଙ୍ଗ ହେଲୁ ଲାଗିଲ ପାପ
ଲକ୍ଷ୍ମଣ ଆମ୍ଭର ଅବଧ୍ୟ
ବଧ କେମନ୍ତେ କରିବୁଁ ହୋଇଛୁ କ୍ରୋଧ ।୧୪।

ଏମନ୍ତ ଶୁଣି ବଶିଷ୍ଠ          ବୋଲନ୍ତି ହେ ନୃପ ଶ୍ରେଷ୍ଠ
ଆଜ୍ଞାଭ୍ରଷ୍ଟ ନୃପ ହେଲେ ହୁଅନ୍ତି ନଷ୍ଟ
ସୁକୃତ ହୁଏ ବିନାଶ          ନାଶ ଯାନ୍ତି ସର୍ବ ଯଶ
ବଧରୁ ତ୍ୟାଗ ଅଟଇ ସକଳ ଶ୍ରେଷ୍ଠ
ଏହା ଶୁଣି ରାମ ନୃପତି
ବୋଲେ ବଶି ଲକ୍ଷ୍ମଣଙ୍କୁ ଗୃହି ବୋଲନ୍ତି ।୧୫।

- (''ବିଚିତ୍ର ରାମାୟଣ''ରୁ ଗୃହୀତ)

— - —

# ଭକ୍ତର ଖେଦୋକ୍ତି

ଭୀମଭୋଇ

ବିପତ୍ତିଖଣ୍ଡନ ଦୁଃଖୀରଞ୍ଜନ ଅଖିଳ ବ୍ରହ୍ମାଣ୍ଡନାଥ ।
ଆଜ୍ଞା ଅନୁସରି କୃପା ହେବ ବୋଲି ପ୍ରସାରିଛି ବେନି ହସ୍ତ ।୧।

ତପନକୋଟି ଆବରଜନ୍ତୁ ଈଶ୍ୱର ତ୍ରିଭୁବନ ଗଡ ପତି ।
ଦୟା ହେବ ବୋଲି ମନେ ମନେ ଭାଳି ଉଲ୍ଲାସ କରିଛି ଚିତ୍ତ ।୨।

ଦଗଧରେ ଦେହ ପୋଡୁଛି ହୃଦୟ ଅଣାକାର ବ୍ରହ୍ମମସ୍ତ ।
କ୍ଷଣକେ ବେଦନ କ୍ଷଣେ ଶାନ୍ତମନ ଅଞ୍ଚଳରେ ପୋଛେ ଲୁହ ।୩।

ଖଳବଳ କରୁଅଛି ଆଦ୍ୟମୂଳ କେତେଦିନେ ସଙ୍ଗସିଦ୍ଧି ।
କାଳଦଣ୍ଡ କଷ୍ଟ କେତେ ମୁଁ ସହିବ ପ୍ରାଣକୁ ଗଲାଣି ବାଧି ।୪।

ଅଣବୃଷ୍ଟାମଣା କରି ସେ ଯାତନା ଧରି ମାରୁଅଛ ଦେଖ ।
ନିଗୂଢ଼ ମନ୍ଦରେ ପକାଇ ବନ୍ଦୀରେ ଦେଉଅଛ କେତେ ଦୁଃଖ ।୫।

କ୍ଷୁଧା ତୃଷ୍ଣା ମୋର ଆଧାର ନକରି ରହୁଅଛି ନିରଜନେ ।
ଟଳି ଟଳି ଆତ୍ମା ଟଳି ନ ପଡୁଛି ଏକା ପରଂବ୍ରହ୍ମ ବଳେ ।୬।

ଜନ୍ମରେ ମୁଁ ଏକା କର୍ମରେ ବିଶାଖା ଅଟଇ ଯେ ହରମାକ୍ଷୀ ।
ଅଦୋଷରେ ମୋତେ ବିଅର୍ଥେ ଦଣ୍ଡୁଛ ଚନ୍ଦ୍ର ସୂର୍ଯ୍ୟ ଛନ୍ତି ସାକ୍ଷୀ ।୭।

ନାହିଁ ବାଡ଼ି ବୃତ୍ତି ବିଶ୍ରାମରେ ସ୍ଥିତି ଜନ୍ମଜନ୍ମାନ୍ତରେ ଦୁଃଖୀ ।
ବିବେକ ନକରି ମାରୁଅଛ ଧରି କି କି ଅପରାଧ ଦେଖି ।୮।

ନୁହଇ ଦାମ୍ଭିକ ନାସ୍ତିକ କପଟୀ ଧର୍ମ ଆଶ୍ରିତର ପ୍ରାଣୀ ।
କର୍ମ ଲେଖା ଯୋଗ ଭୁଞ୍ଜୁଅଛୁ ଭୋଗ କି କି ଦୋଷ କଲି ପୁଣି ।୧୦।

କି କରିବ କରୁ ଆତୁର ଏଥିରୁ ଯାତନା ବୁଝିବା ଭଲ ।
ଅନାଦି ଈଶ୍ୱର କରିବେ ଉଦ୍ଧାର ଭବେ ବାନ୍ଧିଥିଲେ ଭେଳା ।୧୦।

ତୁହିଁ ମାଟି ପୃଥ୍ୱୀ ଜ୍ୟୋତିରୂପ ମୂର୍ତ୍ତି ତେତିଶକୋଟି ଦେବଗଣ ।
ଆପେ ତେଜ ବାଇ ଥାଅ ସାକ୍ଷୀ ହୋଇ ନବଲକ୍ଷ ତାରାଗଣ ।୧୧।

ପୃଥୀକି ଧାରଣ କରୁନ୍ତି କାରଣ ଜଳ ବହ୍ନିକ ପବନ ।
ଅଗ୍ନି ନେଜେ ଗ୍ରହିଁ ଦେବେ ମନ୍ମ ପାଇଁ ସାକ୍ଷୀରୂପେ ସର୍ବେ ଶୁଣ ।୧୨।

ଆଦ୍ୟନବ ଋଷି ନ୍ରଡ଼ା ବ୍ରହ୍ମବାସୀ ଚଉଦଠୀ ସିଦ୍ଧ ଯୋଗୀ ।
ଧର୍ମରେ ଧଇର୍ଯ୍ୟ ତୁମ୍ଭେମାନେ ବୁଝ କେତେକେତେ ଅଛୁ ଲଗି ।୧୩।

ଋଷିମୁଖ ଦଶ ଦଶ ବେଦଶାସ୍ତ୍ର ଛପନ କୋଟି ଜୀବ ଯେତେ ।
ପ୍ରଭୁଙ୍କ ପ୍ରତାପ ଦେଖିବ ପ୍ରତ୍ୟକ୍ଷ ଦୋଷ ନାହିଁ ଦେବ ମୋତେ ।୧୪।

ଏ ସତ୍ୟ ସମ୍ପୁଟ କହୁ କହୁ ହେବ ନିଷ୍ଠା ଭକ୍ତି ପୂର୍ଣ୍ଣ ଫଳ ।
ଏ ମୋର ବିକଳ ଦେଖୁଛ ସକଳ ସାକ୍ଷରେ ସର୍ବେ ରହିଲ ।୧୫।

ମୁଁ ଯାହା ବୋଇଲି ବିନସ୍ତି ହୋଇଲି ଗର୍ବ କରିବାକୁ ନାହିଁ ।
ପ୍ରଭୁଙ୍କୁ ଜଞ୍ଜାଳ କରୁଛୁ କଟାଳ ପ୍ରାଣର ଆକୁଳେ ମୁହିଁ ।୧୬।

ନାମ କୃପାସିନ୍ଧୁ ଭକତଙ୍କ ବନ୍ଧୁ ଅଣାକାର ବ୍ରହ୍ମରାଶି ।
ଅପରାଧ କ୍ଷମାକର ହେ ମହିମା ଫେଟାଅ ବନ୍ଧୀରୁ ଆସି ।୧୭।

ସିଦ୍ଧବ୍ରହ୍ମବାଣୀ କମ୍ପୁଛି ଧରଣୀ ଚମ୍ପିଲେ ଖଣ୍ଡୁଛି ପାପ ।
ନିଷ୍ଠାଧର୍ମରେ ନିର୍ବେଦ କର୍ମରେ ବାନା ଉଡ଼ୁଛି-ଅଲେଖ ।୧୮।

ପିଣ୍ଡକୁ କାରଣ ଜୀବ ଉଦ୍ଧାରଣ ଅମାପ ଅକ୍ଷୌଣୀ ଜପ ।
ଭାସୁଅଛୁ ଜଳେ ସୋଳଦଳ ବଳେ ନାହ୍ମକର ଶୂନ୍ୟରୂପ ।୧୯।

ଅସନ୍ତୋଷ ହେଲି କୋପେ ଗାଳି ଦେଲି ନ ଧରିବା ପ୍ରଭୁ ରୋଷ ।
କହେ ଭୀମ ହୀନ ପାମର ଅଜ୍ଞାନ କ୍ଷମାକର ମୋର ଦୋଷ ।୨୫।

(ସ୍ତୁତି ଚିନ୍ତାମଣିରୁ ସଂଗୃହିତ)

—*—

# କାଠଯୋଡ଼ି ତୀରେ ସମର ସଜ୍ଜା

## ୰ ରାଧାନାଥ ରାୟ

(ନଟବାଣୀ ବୃତ୍ତେ)

କାଠଯୋଡ଼ି-ତୀରେ ଶୋଭଇ ଶିବିର
କୋଲାହଳପୂର୍ଣ୍ଣ କାଠଯୋଡ଼ି-ତୀର,
ଧାଡ଼ି ଧାଡ଼ି ହୋଇ ମହାନଦୀ ଯାଏ,
ଶୁଭ୍ର ତମ୍ବୁ ଶୋଭେ ଖଡ଼ି ଶୈଳ ପ୍ରାୟେ,
ଉଡ଼ଇ କେତନ ମନ୍ଦ ସମୀରଣେ,
ଝଂକଝଂକେ ଅସ୍ତ୍ର ପ୍ରଦୋଷ କିରଣେ,
ବାଦ୍ୟର ଶବଦେ କମ୍ପଇ ଅବନୀ,
ଜନ୍ମୀ ଗର୍ଭୁ ଉଠେ ଶତ ପ୍ରତିଧ୍ୱନି,
ଲକ୍ଷ ବନ୍ଧୁଛନ୍ତି କାହିଁ ଯୋଦ୍ଧାଦଳି,
କ୍ଷଣେ କ୍ଷଣେ ଉଠେ ହର୍ଷ କୋଳାହଳି,
କାହିଁ ତଲବାର ଶେଳ-ବାଡ଼ି-ଖଣ୍ଡେ,
ବିଜୁଳି ସଦୃଶେ ଝଳେ ହୋଇ ଦଣ୍ଡେ,
ମଲ୍ଲଯୁଦ୍ଧେ କାହିଁ ଜଣେ ଜିଣନ୍ତି,
ତାଳି ଦେଉଛନ୍ତି ଦର୍ଶକମଣ୍ଡଳୀ,
କାହିଁ ଅଶ୍ୱାରୋହୀ ଘେନି ଅଶ୍ୱବର,
କଦମେ ବୁଲାଇ ଦଉଛି ଚକ୍କର,
କାହିଁ ଧରି ଅସ୍ତ୍ର ମାଜୁଛନ୍ତି ଲୋକେ,
କାହିଁ ଅବା ଗଳ୍ପ କରୁଛନ୍ତି ଥୋକେ,
ଅବଗାହୁଛନ୍ତି କରୀ ଦଳେ ଦଳେ,
ବିଷମ ସନ୍ତାଏ ପଶି ସ୍ରୋତ-ଜଳେ,
ଦାସେରକ ଆଶ୍ରା କରି ତରୁତଳ,
ରୋମନ୍ଥଉଛି ଗ୍ରୀବା ଟେକି ନମ୍ରଦଳ,

ଘାରବାହ୍ନୀ ଯେତେ ଗର୍ଦ୍ଧଭାଦ୍ଧ କର,
ଭ୍ରମୁଛନ୍ତି ଦୂରେ ଦଳେ ଦଳେ ଚର,
ସ୍ୱପଣି ବସିଛନ୍ତି କାଠଯୋଡ଼ି-ବନ୍ଧେ,
ସ୍ୱକା କଣା ଲାଗିଅଛୁ ନାନା ଛନ୍ଦେ,
ନଦୀଶଯ୍ୟା ନଦୀବନ୍ଧ ନଦୀକୂଳ,
ସବୁଠାରେ ଲୋକେ ହୋଇଛନ୍ତି ଠୁଳ
କୁଶଭଦ୍ରା ଦସ୍ୟୁ-ପ୍ରସୂତ ଭାର୍ଗବୀ
କାଠଯୋଡ଼ି ଠାରୁ ଯହିଁ ଜନ୍ମ ଲଭି,
ବହୁଛି ଦକ୍ଷିଣେ, ସ୍ୱପକ୍ଷେତେ ତା'ର,
ବୈରଗଙ୍କର ଶୋଭେ ସ୍କନ୍ଧାବାର,
ଶୂନ୍ୟ ଥିଲା ଆଜି ପ୍ରଭାତେ ଶିବର,
ଏବେ ବେଢ଼ିଅଛି ମନୁଷ୍ୟ-ପ୍ରାଚୀର !
ବହୁବର୍ଷ ବ୍ୟାପୀ ଲାଗିଛି ସଂଗ୍ରାମ,
ବହୁଅଛି ରକ୍ତ-ସ୍ରୋତ ଅବିଶ୍ରାମ,
ସମଗ୍ର ଉତ୍କଳୁଁ କେତେ ମହାବୀର,
ରଣାଙ୍ଗନେ ଆସି ଦେଲେ ନିଜ ଶିର,
ତାଳୀଦନ ଶ୍ୟାମ କନକା କୁଜଙ୍ଗ,
ମଶଚ ହରିଶପୁର ଅନ୍ତରଙ୍ଗ,
ବରାହ-ପାଳିତ ବାଳିପୂର୍ଣ୍ଣ ଆଳୀ,
କ୍ଷତ୍ରବୃନ୍ଦ ଯାର ମହାବୀର୍ଯ୍ୟଶାଳୀ,
ପବିତ୍ର ତୁଳସୀ କ୍ଷେତ୍ର ବହୁ ମୂଦ,
ସ୍ୱାକନ୍ତ ଯହିଁ ପ୍ରଭୁ ହଳାୟୁଧ,
ଅସୁର-ଈଶ୍ୱର ଯହିଁ ରକ୍ତପାନ,
ନିତ୍ୟକରେ ଚଣ୍ଡୀ ତୃଷାର୍ତ୍ତ କୃପାଣ,
ଶାଳିପୁର ଯହିଁ ଚନ୍ଦ୍ରୋପଳା-ନୀର,
ପୂତ ଅଭିଷେକେ ଶ୍ରୀ ଭଗବତୀର,
ବହୁଦ୍ୱାର ଶୋଭେ ପୁର ଚଉଦ୍ୱାର,
ଉତ୍ତର କୋଶଳା-ମୌଳି-ଅଳଙ୍କାର,
ସ୍ନେହ ବଢ଼ାଇଲେ ବଳାଗଢ-ପ୍ରିୟା,
ଯା କଟକ-ଟେକ ଟଙ୍କିଲ ଛତିଆ,
ସ୍ୱନାମ୍ଭକ ଶୈଳ ଦର୍ପ ଦର୍ପଣୀର,
ହ୍ରପବୀତ ଯାର ଶୁଭ୍ର ଝର ନୀର,

ଚନ୍ଦନ-ନିକୁଞ୍ଜ-ମଞ୍ଜୁଳା ଆଳତି,
ସ୍ୱରୂପା ବିରୂପା ଯହିଁ କରେ ଗତି,
ବିରଜା ମଣ୍ଡଳେ ଯେତେ ବୀର-ପଲ୍ଲୀ,
ପୂଗମାଳେ ଯହିଁ ଉଡ଼େ ନାଗବଲ୍ଲୀ,
ପରସ୍ପରେ ଭୁଜ ଛନ୍ଦବାରେ ସଦା,
ଚମ୍ପାଚୂତ ଯହିଁ ବଳାନ୍ତି ଶରଧା,
ଭଦ୍ରକ ଯା ପାଦେ ବେଢ଼ିଅଛି ଛନ୍ଦ,
ଉତ୍କଳେ କାଳନ୍ଦୀରୂପିଣୀ ସାଳନ୍ଦୀ,
ଯୋର ଗର୍ବ ଯାର କରଇ ପ୍ରସାର,
ପଶ୍ଚିମେ ପର୍ବତ ପୂର୍ବେ ପାରାବାର,
ନୀଳଗିରି ଯହିଁ ମର୍କତ ମହୁଡ଼,
ଟେକଛି ଅମ୍ବରେ ଶୈଳ ସ୍ୱର୍ଣ୍ଣଚୂଡ଼,
ଯୁନଙ୍ଗ ବିରହେ ଯହିଁ ବୀରାଙ୍ଗନା,
ସ୍ଥର-ଛୁରି ପରି ମାରେ ଛୁରୀଅନା,
ଗ୍ରାମ ସୀମନ୍ତିନୀ ନିଶା-ଅଭିସାର,
ଅନୁକୂଳ ବାଲି-ସ୍ତୂପାବଳୀ ଯାର,
ମୃଗଶିର ପ୍ରାଚୀ-ତୀରେ ଅଭିରାମ,
ମାଧବ ସନାଥ ମାଧବାଖ୍ୟ ଗ୍ରାମ,
ନିଆଳୀ ଯା କୁଞ୍ଜେ ପାଟଳ-ପ୍ରସୂନ,
କାମିଙ୍କି ତରଜେ ଯେହ୍ନେ କାମ-ତୂଣ,
କୋଠଦେଶ ମଞ୍ଜୁ ପୁନ୍ନାଗ-କେଶରେ,
ମଠେ ଗଡ଼ ଯହିଁ କୁଶଭଦ୍ରା କଲେ,
କୋଠରାଙ୍ଗ ଯହିଁ ବଦନ ବିଜନେ,
ଧଉଳି ଦେଖଇ ଦସ୍ତା ଦରପଣେ,
ରାହାଙ୍ଗ ରଚନ୍ତି ଯହିଁ କେଳି-କଳା,
ଉଜ୍ଜ୍ୱଳ ନିକୁଞ୍ଜେ କଜ୍ଜ୍ୱଳ-କୁନ୍ତଳା,
ଅନାରି ସିକତା-କୁଦେ ତରଙ୍ଗିତ,
ସୁନ୍ଦର ରଙ୍ଗଣେ ସଦା ସିନ୍ଦୂରିତ,
ପାରିକୁଦ ଅରି ଗରବ-ଚର୍ବକ,
ନୀଳଦ୍ୟୁତି ହ୍ରଦ-ହୃଦସ୍ଥ ପଦକ,
ଦାଣ୍ଡିମାଳ ଯାର ଶଇଳ ବକ୍ଷରେ,
ବୀର-ଯଶ ଲେଖା ଅକ୍ଷୟ ଅକ୍ଷରେ,

ଖଲ୍ଲୀକୋଟ ଯହିଁ ଶ୍ରେଷ୍ଠ ମଲ୍ଲମାନେ,
ନିର୍ମଳା-ନିର୍ଝର-ନୀରମୃତ-ପାନେ,
ସ୍ୱର୍ଗ ଖଣ୍ଡେ ପଡ଼ିଥିଲା ପ୍ରାୟେ ଛିଡ଼ି,
ଶୈଳେ, ସ୍ରୋତେ, ସରେ ସୁରମ୍ୟ ଖିମିଡ଼ି,
ଜଗଜ୍ଜନ-ମନୋରଞ୍ଜନୀ ମଞ୍ଜୁଷା,
ଗିରୀନ୍ଦ୍ର ମହେନ୍ଦ୍ର ଯାର ମହାଭୂଷା,
ଏହି ଦେଶ ଅନ୍ୟ ଦେଶବାସୀ ଶୂର
କାଠଯୋଡ଼ି-ତୀରେ ଗଲେ ପ୍ରେତପୁର,
ଚଣ୍ଡାୟୁଧ ଗଣ୍ଡ ଯୁଦ୍ଧେ ହୋଇ ରୁଣ୍ଡ
ଶତ୍ରୁ-ଖଣ୍ଡାଘାତେ ଗଡ଼ାଇଲେ ମୁଣ୍ଡ,
ମାଲ୍ୟଗିରି-ବାସୀ ଦୁର୍ଦ୍ଧର୍ଷ ଜୁଆଙ୍ଗ,
କେତେ ହେଲେ ରଣଭୂମେ ବିକଳାଙ୍ଗ
କ୍ରୌଞ୍ଚ ପକ୍ଷଚୂଡ଼ା ବାଦ୍ୟ ତାଳେ ତାଳେ
ନାଚଇ ଯାହାଙ୍କ ବୀରନୃତ୍ୟ-କାଳେ ।
ହରିଦ୍ରା-ହରିତ-ଅଧିତ୍ୟକାସ୍ଥ
କନ୍ଧ ଯୋଧବୃନ୍ଦ ମହାଧନୁର୍ଦ୍ଧାସ୍ଥ,
ଗାଲମୋଗ୍ରଧାସ୍ତ ତାଳଚେର ଶୂର,
ଉଲ୍ଲାସେ ଦଳନ୍ତି ଦର୍ପେ ଯେ ରିପୁର,
ସ୍ୱାହା-ସହଚରୀ ହିଙ୍ଗୁଳାଙ୍କ ବରେ
ଦାବାନଳରୂପୀ ରିପୁ କାନନରେ,
କପିଳାସ-ଖୋଲ-ନିବାସୀ ଶବର
ରଣରଙ୍ଗ ଟେଙ୍କା ଯା ବଂଶ ଶେଖର,
ପର-ନାଶେ ପଟୁ ଯାହାଙ୍କ ପରଶୁ,
କେତେ ହେଲେ ଆସି ରଣ-ଯଜ୍ଞ-ପଶୁ,
ଯୁଦ୍ଧ-ଅଶ୍ୱ କେତେ ଯୁଦ୍ଧେ ହୋଇ ହଣା
ଗୃଧ୍ରଙ୍କର ହେଲେ ରୁଧିର ପାରଣା,
ସପ୍ତକୋଶୀ ଗଣ୍ଡ ରାଜେ ଶୈଳକୁଞ୍ଜେ
ସୁଶୀତଳ ତୁଙ୍ଗ ଶୈଳଗୁମ୍ଫା ପୁଞ୍ଜେ,
ନିର୍ଜନେ ଢାଳନ୍ତି ନବ ଦ୍ରୁମାବଳୀ
ଜଳ-ଦେବତାଙ୍କୁ ଯହିଁ ପୁଷ୍ପାଞ୍ଜଳି ।
ତହିଁ ମହାନଦୀ-ପ୍ରବାହେ ନିଦାଘେ
ପ୍ରିୟା-ସଙ୍ଗେ ଖେଳୁଥିଲି ଅନୁରାଗେ,

ମତ୍ତ-ଦନ୍ତାବଳ, ଏବେ ରଣସ୍ଥଳ,
କରିଅଛି ନିଜ ଅସ୍ଥିରେ ଧବଳ;
ଭଗ୍ନାୟୁଧ, ଭିନ୍ନ ବର୍ମ, ଛିନ୍ନ ଢାଲ—
ସଙ୍ଗେ ପଡ଼ିଅଛି ଅସଂଖ୍ୟ କଙ୍କାଳ;
ଏକାଳେ ତୁଳସୀପୁର ସ୍ଥିତ ଯହିଁ,
ପିଉଥିଲେ ତହିଁ ରଣରକ୍ତ ମହୀ,
ବିକଟେ ଓଟାରି ତହିଁ ଶବ-ସ୍ନାୟୁ
ଯୁଝୁଥିଲେ ଗୃଧ୍ର ସଙ୍ଗତେ ଗୋମାୟୁ,
ତହିଁ ବେନି ପକ୍ଷେ ରଣ 'ଦେବୀଙ୍କର
ସ୍ୱଶିର କମଳେ ପୂଜିଲେ ପସ୍ପର,
ଜୀବନେ ହେଲେ ହେଁ ପରସ୍ପରେ ବାଧୀ,
ମରଣେ ଲଭିଲେ ଏକତ୍ର ସମାଧି ।
ଖଡ଼ାନାସୀ ଗଡ଼େ ସୁବର୍ଣ୍ଣ କେଶରୀ,
ରୁଦ୍ଧ, ରୁଦ୍ଧ ଯଥା ପିଞ୍ଜରେ କେଶରୀ,
ଯୁଦ୍ଧ ପରେ ଯୁଦ୍ଧ ହାରି ଅବଶେଷେ
ରୁଦ୍ଧ ଦୁର୍ଗଦ୍ୱାର ନୃପତି ଆଦେଶେ;
ଅନଶନେ ରହେ ଚଣ୍ଡିକା-ଦେଉଳେ
ଅଧା ପଡ଼ିଥିଲେ ହୃଦୟ ଆକୁଳେ;
ସ୍ୱପନେ ଚଣ୍ଡିକା ଭୂପତି ଅଗ୍ରତେ
ଉଭା ହୋଇ ଆଜ୍ଞାଦେଲେ ଏହିମତେ,
"ଶତ୍ରୁ ତୋର ଦେବ ବଳେ ବଳୀଆର
ସମ୍ମୁଖ ସଂଗ୍ରାମେ ଅଟେ ଦୁର୍ନିବାର,
ଦୁର୍ନିବାର ଦାବ ବହ୍ନି ଯଥା ବନେ
ଶୈଳ ସ୍ରୋତସ୍ୱତୀ ଅଥବା ପ୍ଲାବନେ,
ଦେବୀ ଚନ୍ଦ୍ରଚୂଡ଼-ମୌଳି-ନିବାସିନୀ
ସହାୟ ତାହାର ସୁର ତରଙ୍ଗିଣୀ;
ଗଙ୍ଗା ବାକ୍ୟେ ତାକୁ ଦେବ ଚନ୍ଦ୍ରଚୂଡ଼
ବାଞ୍ଛିତ୍ର ଦେବାକୁ ଉଚ୍ଛଲେ ମହୁଡ଼,
ମନାସନ୍ତ୍ର ମହାରୁଦ୍ର ଯାହା ମନେ,
ନିଯୁତରୂପେ ତା ଫଳେ ତ୍ରିଭୁବନେ,
ଶକ୍ତି ନାହିଁ ବତ୍ସ, କାହାର ଜଗତେ
ନିଯୁତକୁ ନେବ ନିଜ ଇଚ୍ଛା ପଥେ;

ସମ୍ମୁଖ ସଂଗ୍ରାମେ ଶତ୍ରୁ ଜିଣିବାର
ଆଶା ଛାଡ଼ି ରୁଦ୍ଧ କର ଗଡ଼ଦ୍ୱାର;
ଶତ୍ରୁ ଦର୍ପହାରୀ ଏହୁ ଦୈବ ମଣି
ଶିରୋମଣି ରୂପେ ପିନ୍ଧବୁ ନୃମଣି,
ଯାବତ ଏ ମଣି ଥିବ ତୋର ଶିରେ,
ଭେଦି ନ ପାରିବେ ଦୁର୍ଗ ଶତ୍ରୁ-ବୀରେ,
ରଖି ନ ପାରିଲେ ଏହା ଯତ୍ନ କରି
ରାଜଦଣ୍ଡ ଦିବ କରୁ ଅପସର।"
ଏହା କହି ଦେବୀ ହେଲେ ଅଦର୍ଶନ,
ଏଣେ ଭୂପତିଙ୍କ ଭାଙ୍ଗିଲା ସ୍ୱପନ।

————

# ପଦ୍ମ

## ୰ ମଧୁସୂଦନ ରାଓ

(କଳହଂସ କେଦାର ବୃତ୍ତ)

୧

କୋଟି ଲାବଣ୍ୟ ନିଧି    ରେ ପଦ୍ମ ତୁହି
କି ଅମୃତେ ତୋ ତନୁ    ଗଢ଼ିଲା ବିହି ?
ତୋ ରୂପ-ଦରଶନେ    ମୋର ହୃଦୟ
ପୂର୍ଣ୍ଣ ଆନନ୍ଦେ ହୁଏ    ଅମୃତମୟ

୨

ଢଳ ଢଳ ସୁନୀଳ    ସରସୀ ଜଳ,
ଢଳ ଢଳ ଶ୍ୟାମଳ    ନଳିନୀ ଦଳ,
ଢଳ ଢଳ ଭାସ୍କର    ରଶ୍ମି ଉଜ୍ଜ୍ୱଳ,
ତା ମଧ୍ୟେ ଢଳ ଢଳ    ଶୁଭ୍ର କମଳ ।

୩

ହସ ହସ ବଦନେ    ହରଷ ଭରେ
ଅନାଇ ରହିଅଛୁ    ତୁ ଦିବାକରେ ।
ତୋ ମୁଖେ ଜ୍ୟୋତିଧାରା    ଏ ଦିବାକର
ଢାଳଇ ଅବିରଳ    ଆରେ ପୁଷ୍କର ।

୪

ପିଉ ତୁ କି ଆନନ୍ଦେ    ପୀୟୂଷ ସର
ସେ ଶୁଭ୍ର ଜ୍ୟୋତିଧାରା    ଭୃଙ୍କଢ ଝର ।
ଆହା କି ଦିବ୍ୟ ଶିଖା    ତହୁଁ ତୁ ଲଭୁ,
ଧନ୍ୟ ଉତ୍ପଳ, ଧନ୍ୟ    ତୋହର ପ୍ରଭୁ !

୫

ମକରନ୍ଦ ଅମୃତ    ହୃଦେ ତୋହର
ତହୁଁ ସ୍ଫୁରଇ ବାସ    କି ମନୋହର
ସେ ମଧୁପାନେ ମତ୍ତ    ମଧୁପଦଳ
ସେ ସୌରଭେ ପରାଣ    କେଡ଼େ ଶୀତଳ ।

୬

ଶ୍ୱେତ ଲୋହିତେ ରଙ୍ଗା    ତୋ ଶୁଭ୍ର ତନୁ,
ବାରେ ଦେଖିଲେ କେବେ,    ନ ପିବ ମନୁ ।

ସର୍ବ ଶୋଭାର ଶୁଦ୍ଧ    ଉପମା ସ୍ଥଳ,
ଭକତ ପ୍ରେମିକର    ଶୁଦ୍ଧ ସମ୍ବଳ ।

୭

ସ୍ନେହ କରୁଣା ଭକ୍ତି    ପବିତ୍ର ରସ,
ପୂରିଛି ତୋ ଅନ୍ତର,    ରେ ତାମରସ
ନୋହିଲେ କାହୁଁ ତୋର    ଦର୍ଶନେ ମନ
ବିମଳ ପ୍ରେମ ରସେ    ହୁଏ ମଗନ ?

୮

ମଧୁମୟ ପବିତ୍ର    ଯାତ୍ରା ବିଶ୍ୱରେ,
ତୋ ନାମ ସଙ୍ଗେ ମିଶା    ବିଧାତା ବରେ,
ପ୍ରିୟ ମୁଖ ନୟନ    କର ଚରଣ
ତୋ ନାମ ସଙ୍ଗେ ସିନା    ସୁଖ କାରଣ ।

୯

ସତ୍ୟ ଶିବ ସୁନ୍ଦର    ପରମେଶ୍ୱର—
ନାମ ସଙ୍ଗତେ ଲଗ୍ନ    ନାମ ତୋହର ।
ତେଣୁ ରେ ଅରବିନ୍ଦ    ଭକ୍ତଜନର
ବାଞ୍ଛା ପଦାରବିନ୍ଦ    ସୁମନୋହର ।

୧୦

ସର୍ବ ଶୋଭାର ସଦ୍ମ    ରେ ପଦ୍ମ, ତୋର
ସଙ୍ଗେ ନିଗୂଢ଼ ଯୋଗ    ଅଛଇ ମୋର ।
ଜୀବନ ମରଣରେ    ତୋ ସଙ୍ଗେ ମିଶି
ଥାଉ ମୋ ମନ-ପଦ୍ମ    ଦିବସ ନିଶି ।

୧୧

କଲୁଷପଙ୍କେ ମୁହିଁ    କେତେ ମଳିନ,
କେମନ୍ତେ ସର ତୋର    ହେବି ନଳୀନ ।
ପଙ୍କଜ ଅଟୁ ଶୁଦ୍ଧ,    ତେଣୁ ଭରସା;
ତୋ ପରି ଶୁଭ୍ର ହେବି    ଲଭି ସୁଦଶା ।

୧୨

ଅନନ୍ତ ମହେଶ୍ୱର    ମୋ ପ୍ରାଣସାଇଁ,
ବୋଲି ଗାଇବି ସଦା    ଥିବ ଅନାଇଁ ।
ଶିଖାଅ ମୋତେ ସଦା    ଏ ପୁଣ୍ୟ ବ୍ରତ,
ତୋର ଆଶିଷେ ପୂରୁ    ମୋ ମନୋରଥ ।

---

# ଉପେନ୍ଦ୍ରଭଞ୍ଜଙ୍କ ସ୍ୱପ୍ନ ଦର୍ଶନ

## ୬ ବ୍ୟାସକବି ଫକୀରମୋହନ ସେନାପତି

( ରାଗ—ମଙ୍ଗଳ )

ନିଶୀଥ ସମୟେ ସ୍ୱପ୍ନଯୋଗେ ବୀଣାପାଣି,
ବୋଇଲେ ଉପେନ୍ଦ୍ରଭଞ୍ଜେ, "ଶୁଣ ବତ୍ସ ! ବାଣୀ ।

ଯେନ ବାପା, କୃପାକରି ଦେଉଛନ୍ତି ଏ ବର,
ଉତ୍କଳମଣ୍ଡଳେ ହେବୁ ଯଶସ୍ୱୀ ଅମର ।

ତ୍ୟାଗ କର ଆରେ ବତ୍ସ ! ରାଜ ସିଂହାସନ,
ସେହି ତୁଚ୍ଛ ଧନେ ତୋର କିବା ପ୍ରୟୋଜନ ?

ପରିତ୍ୟାଗ କର କ୍ଷଣଭଙ୍ଗୁର ବିଷୟ,
ଦେଉଛି, ଗ୍ରହଣ କର ଫଳ ସୁଧାମୟ ।

ଏ ରାଜତ୍ୱ, ଏ ବିଭବ ଯିବ କାହିଁ ଭାସି,
ଅକ୍ଷୟ ସୁଖ୍ୟାତି ଥିବ ଜଗତେ ବିକଶି ।

ଅସଂଖ୍ୟ ଅସଂଖ୍ୟ ଥିଲେ, ଅଛନ୍ତି ନରମଣି,
କରୁଥିଲେ, କରୁଛନ୍ତି ଶାସନ ଅବନୀ ।

ନାହିଁ ତ ନ ଥିବ ଜଗତରେ କାହା ନାମ,
ମାନବ ବିକାଶୁଥିବ ତୋହ ଗୁଣଗ୍ରାମ ।

ନ ଭୁଲ ରାଜତ୍ୱ ସୁଖ ସୌଭାଗ୍ୟର ହେତୁ,
ନ ହେଲେ ସତର୍କ, ହେବ ଯମଦ୍ୱାର ସେତୁ ।

ସନାତନ ରାଜଧର୍ମ ପ୍ରଜାଙ୍କ ପାଳନ,
ଏବେ ତାହା ରାଜ୍ୟାଘରେ ଅର୍ଥ ସଙ୍କଳନ ।

କିପାଇଁ ହେବୁରେ ବାପା, ଅଧର୍ମର ଭାଗୀ ?
କର ଯତ୍ନ ଧର୍ମ ଯଶ ଉପାର୍ଜନ ଲାଗି ।

ଜଳାଞ୍ଜଳି ଦେଇ ସେହି ରାଜସିଂହାସନେ,
ଧ୍ୟାନମଗ୍ନ ହୋଇ ବସ ବିରଳେ ବିଜନେ ।

କର ଦେଶେ ରାମଚନ୍ଦ୍ର ମହିମା ପ୍ରଚ୍ଚର,
ଉଦ୍ଧର ଆପଣେ, କର ଦେଶକୁ ଉଦ୍ଧାର ।
ଗ୍ରାମେ ଗ୍ରାମେ ଲୋକମାନେ ତୋ ପ୍ରେମ ସଙ୍ଗୀତ,
ଗାଉନ୍ତୁ ଆନନ୍ଦମନେ ହୋଇ ବିମୋହିତ ।
ଗୁହିଁ ଦେଖ କି ହୋଇଛି ତୋର ମାତୃଭାଷା,
କେବଳ କରିଛି, ପୁତ୍ର ତୋତେ ମୁହିଁ ଆଶା ।
ନାନା ଛନ୍ଦୋବନ୍ଧେ ଗୀତ କରିବୁ ରଚନା,
ତୋହ ଯୋଗେ ହେଉ ମାତୃଭାଷା ବିଭୂଷଣା ।
ଘୋଷିବ ଅକ୍ଷୟ କୀର୍ତ୍ତି ଯୁଗ ଯୁଗାନ୍ତର,
ଗାଇବେ ଉତ୍କଳ ଦେଶବାସୀ ନାରୀନର ।"
ଏତେ ବୋଲି ଭଗବତୀ ହେଲେ ଅନ୍ତର୍ଦ୍ଧାନ,
ଚେତା ପାଇ ଭକ୍ତକବି ଆରମ୍ଭିଲେ ଗାନ ।

———

# ପ୍ରାଣ-ବୀଣା

## ୰ କବିଶେଖର ଚନ୍ଦ୍ରମଣି ମହାନ୍ତି

ବାଜ ବାଜ ବୀଣା ବାଜ ଉଚ୍ଚସ୍ୱରେ
ଉଠାଇ ମୂର୍ଚ୍ଛନା ମଧୁରତର,
କେତେ ମୁଁ ମାଜିବି ପୁରୁଣା ତାରକୁ
ଛୁଡ଼ିଯିବ କାଲେ ମାଡ଼୍ ଟୁ ଡ଼ର।
ନ ବାଜି ଧୈବତେ ବାଜରେ ପଞ୍ଚମେ
କର ପରିତୃପ୍ତ ଶ୍ରୋତା-ଶ୍ରବଣ,
ନ ବାଜିବୁ ଯେବେ ଅବାଧ ପଣରେ
ସହିବୁ ରଞ୍ଜନ ଉକ୍ତ ଘର୍ଷଣ।
ଛିଡ଼ିଗଲେ ତୋର ଜୀର୍ଣ୍ଣ ଶୀର୍ଣ୍ଣ ତାର
ମାଟିରେ ଯିବ ତୋ ସତ୍ତା ମିଳାଇ,
ସତ ଆସୁଅଛୁ ପଶ୍ଚିମ ଜୀବନ
ଅନା ଅନା ଥରେ ପନ୍ଥକୁ ଚାହିଁ।
ବେଳ ଥାଉଁ ଥାଉଁ ହୁଅ ସଜାଗତ
ନ ମଣ ରେ ଆଉ ହୃତକୁ ଯିତା,
ଗାଇ ଯା ଗାଇ ଯା ପ୍ରାଣମୟ ସ୍ୱରେ
ଆଜୀବନ ପୋଷା ଆଶା-କବିତା।
ଜଥ ରେ ମେଣ୍ଟାଇ ମନ-ଅଭିମାନ
ଧରି ଜନ-ସେବା ପାବନ ବୃତ୍ତି,
ମିଶିଯିବ ମୂର୍ତ୍ତି ମହାକାଳ ମାରେ
ଭାସୁଥିବ ସଦା ସୁବର୍ଣ୍ଣ ସ୍ମୃତି।

———

# ରାମଙ୍କର ଅନୁଚିନ୍ତା

## ୬ ଗଙ୍ଗାଧର ମେହେର

(ବଙ୍ଗଳା ଶ୍ରୀ)

ଭାଗୀରଥୀ-କୂଳେ　　　　ଲକ୍ଷ୍ମଣ ଯେ କାଳେ
　　ବୈଦେହୀ ବର୍ଜି ଗଲେ,
ବ୍ୟାପିଥିଲା ଖର　　　　ସସାଗର ଧର
　　ନିର୍ମଳ ଅମ୍ବର ତଳେ ।

ରାଘବ-ବଧୂର　　　　ନିର୍ଯାତନ ସୁର-
　　ପୁରକୁ ଦହିଲେ ଲଙ୍କା,
ହେବ ବୋଲି ଦିବା-　　　　ନାଥଙ୍କ ସେ କିବା
　　ଶୁଭ୍ର ଯବନିକା-ଶଙ୍କା !

ଜାଣି ସେ ରହସ୍ୟ　　　　ହରିବାକୁ ଦୃଶ୍ୟ
　　ଭାସ୍କର ବଂଶର ଦୋଷ,
ଅଚିରେ ଅବନୀ-　　　　ପୃଷ୍ଠେ ସେ ଯବନୀ
　　ଉଠାଇ ଦେଲା ପ୍ରଦୋଷ ।

ବିହଙ୍ଗମଗଣ　　　　ଡାକନ୍ତେ ଗଗନ—
　　ପ୍ରାଙ୍ଗଣେ ତାରକାକୁଳ,
ଏକ ପଛେ ଏକ　　　　ତା ପଛେ ଅନେକ
　　ଆସି ହୋଇଗଲେ ଠୁଳ ।

ଦେଖିଲେ ସଜନେ　　　　ପ୍ରଶସ୍ତ ପ୍ରାଙ୍ଗଣେ
　　ରାମଚନ୍ଦ୍ର ରଘୁ-ବଂଶୀ,
ବିଷଣ୍ଣ-ବଦନେ　　　　ସଜଳ-ନୟନେ
　　ଏକାକୀ ଅଛନ୍ତି ବସି ।

ଘୁରୁଥିଲେ ରାଜ- ଅଧିକାର ବ୍ୟାଜ
ଅଟେ ମହାଦାସତ୍ୱର,
ଏହି ହେତୁ ପଦେ ପ୍ରକୃତିର ପଦେ
ଝଟିବା ହୁଏ ମାତର ।

ମିଥ୍ୟା କଥା ଯେବେ ପ୍ରଜାଏ କହିବେ
ମେଳ ହୋଇ ଶତ ଶତ,
ମିଥ୍ୟା ଜାଣି ଜାଣି ତାଙ୍କୁ ମାନି ମାନି
ବୋଲିଯାଏ ସତ ସତ ।

ପ୍ରକୃତିର ଶାନ୍ତି— ଯଜ୍ଞରେ ନୃପତି
ସୁଖନ୍ତି ସ୍ୱଭାବେ ବଳି,
ଦୃଢ଼-ଧର୍ମ-ଦାମେ ବଦ୍ଧନିଜକାମେ
ପାଦେ ନ ପାରଇ ଚଳି ।

ଅଭିଷେକ ଯାହା କରିଥାନ୍ତି ତାହା
ପ୍ରୋକ୍ଷଣ ମାତର ବିନା,
ଭ୍ରମର ଟାଳିବା ଅନ୍ୟ କି ବୋଲିବା
ମକ୍ଷିକା ତଡ଼ିବା ବିନା ?

ସୁଖେ ନଇର୍ଶ୍ୟ ନ ଥିବ ଅବଶ୍ୟ
ଦେବତା ହୃଦୟେ ସୁଙ୍କା,
ସେ ହେତୁ ମହତ୍ତି ଦେବତା ନୃପତି
ସେବଇ କୀରତି ସୁଧା ।
ପ୍ରଜାଭକ୍ତି ଜଳ- କଣିକା ପଟଳ
ବିନା ଉଚ୍ଚାସନ ପାଇ,
ଜଳଧର ରୂପ ହୋଇଥାଏ ନୃପ
ପରଜାଙ୍କ ହିତ ପାଇଁ ।

ଭୂମିତଳେ ବଳ ନ ଥାଏ, ସହଜ
ମାଗି ତାହା ଜଳଧରେ;
ପ୍ରଜା-କର-ଦଣ୍ଡ ନ ହୁଏ ପଚଣ୍ଡ
ପ୍ରଚଣ୍ଡ ନୃପତି କରେ ।

ହୃଦ ପଟ୍ଟେ ଜ୍ୱଳେ ବିଦ୍ୟୁତ ଅନଳେ,
ଜଳଦାନେ ଘନ ବାଧ୍ୟ,
ସୁଖ ଦେଇ ରାଜା ପୋଷିବ ପରଜା
ତେବେ ତ ପରମାରାଧ୍ୟ ।

ସ୍ୱର୍ଗ ନକ୍ଷତ୍ରେଣୀର ସମୁନ୍ନତ ଶିର
ରାଜପଦ ଭୂମଣ୍ଡଳେ,
ହେଲେ ଲକ୍ଷ୍ୟଭ୍ରଷ୍ଟ ପଡ଼ି ହୁଏ ନଷ୍ଟ
ନୃପଦ୍ଧ ଗଭୀର ଜଳେ ।

ମାନ୍ୟାକାର ପର ଦଣ୍ଡଗୋଟି ଧର
ସମଦୃଷ୍ଟି ସମଭାବେ,
ରାଜତ୍ୱ ରଙ୍କୁରେ ବିଳସି ରଙ୍କୁରେ
ନିଜ ଜୀବନ ନ ଭାବେ ।

ଯଦି ବାଜିକର ରଙ୍କୁରେ ପସ୍ତର
ଦେଲାରୁ ନ ଯିବ ଭୁଲି,
ତାଳ-ମାତ ଥୋକେ ହସିଦେବେ ଲୋକେ
ବାଦ୍ୟକାର୍ ଦେବ ଗାଳି ।

ପ୍ରିୟ ମଇଥିଳୀ— ବିରହେ ଶିଥିଳୀ—
କୃତ କର ପ୍ରାଣ ଯେବେ,
ନ କରିବ କାର୍ଯ୍ୟ ମାନବ-ସମାଜ
ଆହୁରି ଗଞ୍ଜିବେ ତେବେ ।

ବୋଲିବ ସଂସାର ରାମ କୁଳାଙ୍ଗାର
ଜନ୍ମ ଲଭି ରଘୁବଂଶେ,
ବିସ୍ମର-କୃପଣ ହୋଇ ରାଜପଣ
ତ୍ୟାଗ ବଲ୍ଲି ବଧୂ ବଶେ ।

ବାନପ୍ରସ୍ଥାଶ୍ରମ ହେଲେହେଁ ଉତ୍ତମ
ସମସ୍ତ ମୋ ହୋଇନାହିଁ,
ମୋ କାର୍ଯ୍ୟେ ଭରତ ହେବାକୁ ନିରତ
ସମ୍ମତ ବା ହେବ କାହିଁ ?

ଅଙ୍କ ଦ୍ରବ୍ୟ ପ୍ରୀତ      ହ୍ରାସ ନିତ ନିତ
ଦେଖି ଦେଖି ପୁନଃ ପୁନଃ,
ହେଲେ ଶୂନ୍ୟ ଅଙ୍କ      ଶୂନ୍ୟ ଯୋଗେ ଅଙ୍କ
ସଉହୃଦ ପ୍ରୀତ ଗୁଣ ।

ସ୍ଥୂଳ କଳେବର—      ନୁହଇ ଅମର
ଅମର କେବଳ ମନ,
ମନେ ଯେବେ ସଙ୍ଗ      ହୋଇନାହିଁ ଭଙ୍ଗ
ସେହି ସୁଖ ସୁଖେ ଗଣ୍ୟ ।

କେ ରହିଛି ଭବେ      ବାସ୍ତବ ବିଭବେ
ସୁବର୍ଣ୍ଣ ମୁକୁଟ ବାନ୍ଧି ?
ଯଶ ଅପଯଶ      ନୋହି କାଳ ବଶ
ହୁଅନ୍ତୁ ତା ପ୍ରତିବାଦୀ ।

ସ୍ୱରଗ-ନରକ-      ଗତି-ନିର୍ଦ୍ଧାରକ
ସ୍ୱଖବେ ଜଗତ ଜନ,
ଏଡ଼ି ଜନରବ      ଅନତ୍ୟ ବାସ୍ତବ
ସୁଖ ଲୋଡ଼େ ମାତ ମନ ।

ନାହିଁ ସିନା ଘରେ      ହୃଦ ପ୍ରେମ-ସରେ
ମୋ ପ୍ରିୟା-କମଳ କଳି
ପଡ଼ିଅଛି ଫୁଟି      ମକରନ୍ଦ ଲୁଟି
କରୁଅଛି ମନ-ଅଳି ।

ନୟନ ଯୁଗଳ      କାହିଁକି ବିକଳ
ହୋଇ ଛୁଡ଼ୁଅଛି ଜଳ,
ଶୁଖିଗଲେ ସର      କମଳିନୀ ମୋର
ହୋଇଯିବ ଟଳ ଟଳ ।

ବକ୍ଷ ତୁ ପଥର—      ବନ୍ଦ ହୋଇ କର
ରୁଦ୍ଧ-ନେତ୍ର-ଜଳ-ନାଳୀ,
ନାସିକା-ପବନ      ନ ବହିବୁ ଘନ
କମ୍ପିବ ପ୍ରାଣ-ସଙ୍ଖାଳି ।

ଲକ୍ଷ୍ମଣ ଆସିବ    ସମସ୍ତ ଭାସିବ
ଜୀବନ ସଙ୍ଗିନୀ କଥା,
ଶ୍ରବଣ ଯୁଗଳ    ନ ହୁଅ ଚଞ୍ଚଳ
ଶୁଣିବ ମୁଞ୍ଚିବ ବ୍ୟଥା ।

ରେ ସନ୍ତପ୍ତ ଚର୍ମ !    ନାଶିବ ତୋ ଘର୍ମ
ସମୀର ଆସୁଛି ବନ୍ଧୁ,
ସନ୍ତାପ-ନାଶିନୀ    ସରୋଜ-ବାସିନୀ
ଶ୍ରୀ ଅଙ୍ଗ ସୌରଭ ବନ୍ଧୁ ।

ଆଉ ଏକ କଥା    କହୁଛି ଏକତା
ବାନ୍ଧି ତୁମ୍ଭେ ମନ ସଙ୍ଗେ,
ଚାଲ ହୃଦ ସରେ    ଅନନ୍ତ ବାସରେ
ବିଳସିବ ରସରଙ୍ଗେ ।

ମୋ ପ୍ରାଣସଙ୍ଗିନୀ    ନବ କମଳିନୀ
ଫୁଟି ରହିଅଛି ତହିଁ,
ସ୍ମରଣ ଭାସ୍କର    ଚିର ତେଜସ୍କର
ଅସ୍ତ ତାର ନାହିଁ ଯହିଁ ।

ମୋ ବୋଲେ ରସନା    ତୁ ତହିଁ ରସ ନା
ଖାଇଛୁ ପରଜା ବଉ,
ଯା ଧନେ ପାଳିତ-    ତା ମନେ ଚାଳିତ
ହେବାରେ ନୁହଁ ଭାବିତ ।

ଲୋକେ ଲୋକହିତ-    ସାଧନ ବିହିତ
ବୋଲି ସିନା ଅଛି ପ୍ରାଣ,
ନ ହେଲେ କି ପବ    ଦ୍ରବ କରି ହବ
ପ୍ରାସ୍ତେ କରିଥାନ୍ତା ପାନ ।

✕    ✕    ✕

# ଗ୍ରାମ ହାଟ

## ৺ ନନ୍ଦକିଶୋର ବଳ

---

ଗ୍ରାମେ କାହିଁ ବସେ ପାଳି ହାଟ
ପୂରିଯାଏ ଗ୍ରାମ ବାଟ ଘାଟ;
ଆସିଣ ଦୋକାନୀମାନେ      ବସି ନିଜ ନିଜ ସ୍ଥାନେ
ଯେ ଯାହାର ସଉଦା ସେ କିଣନ୍ତି ବିକନ୍ତି,
ପଇସା, କଉଡ଼ି, ରବି ବଦଳ ରଖନ୍ତି ।
ପାନ, ଗୁଆ, ମିଠାଇ, ଉଖୁଡ଼ା,
ଖଜା, ମୁଆଁ, ମୁଢ଼ି, ଗୁଡ଼, ଚୂଡ଼ା,
ହଳଦୀ, ତେଲ, ନଡ଼ିଆ,      କଦଳୀ, ମାଛ, ଶୁଖୁଆ,
କାଠ, ହାଣ୍ଡି, ଲୁଣ, ରବି, ପରିବା, ଗୁହଳ—
ଆଉ ବିକା କିଣା ହୁଏ, ଶୁଭଇ ଚହଳ ।
ବହୁଜନ ମିଳନ୍ତି ଯେଠାରେ,
କଳିଗୋଳ ଲାଗଇ ସେଠାରେ,
ଅଛଇ ହାଟ-ଦଣ୍ଡିଆ      ହୋଇ ହାଟ ମଧ୍ୟେ ଠିଆ,
କଳିଗୋଳ ହେଲେ ହାଟେ ସେଇ ଭାଙ୍ଗିଦିଏ,
ଦୋକାନୀମାନଙ୍କଠାରୁ ତୋଳା କିଛି ନିଏ,
ସରିଗଲେ ସଉଦାଟି ହାଟେ,
ଚାଲିଯାଏ ଯେହୁ ଯେଝା ବାଟେ,
ଦେଖି ଏସନ ସ୍ୱଭାବ      ମୋ ମନେ ଜାଗେ ଏ ଭାବ—
ଏ ଭବ ଅଟଇ ହାଟ, ସରିଲେ ବେଭାର
ଚାଲିଯାନ୍ତି ବାଟ ଧରି ସର୍ବେ ଯେ ଯାହାର ।

———

# ବିଶ୍ୱର ମିଳନ ଚିତ୍ର

## ୰ ପଣ୍ଡିତ ଗୋପବନ୍ଧୁ ଦାଶ

କାହିଁ ତପନ କେତେଦୂର ଅମ୍ବରେ
କାହିଁ ନଳିନୀ ତଳେ ଫୁଟଇ ସରେ,
ହସିଁବା ମାତେ ରବି କର ବଢ଼ାଇ
ନଳିନୀ ଅଙ୍ଗେ ଦିଏ ଅଙ୍ଗ ଲଗାଇ ।୧।

କାହିଁ ସୁନୀଳ ନଭେ ବିରାଜେ ଇନ୍ଦୁ
କାହିଁ ଧରଣୀ ତଳେ ସୁନୀଳ ସିନ୍ଧୁ,
ପ୍ରେମେ ଲହରୀ ବାଳା ଖେଳେ ଉଲ୍ଲାସେ
ସୁଧାଂଶୁ ସୁଧାମୟ କର ପରଶେ ।୨।

ସଞ୍ଚାରେ ବାୟୁ କାହିଁ ଅନନ୍ତ ପଥେ
ନ ଭୁଲେ ପ୍ରୀତି ଗିରିଗୁହା ସଙ୍ଗତେ,
ନ କରି ଦିନ ବାର ଋତୁ ବାରଣ
ଦରୀ ସୁନ୍ଦରୀ ମୁଖ ଚୁମ୍ବେ ପବନ ।୩।

ନୀରଦ ଆଲିଙ୍ଗନେ ସଦା ସ୍ନେହରେ
ଗୁପଇ ଚପଳାକୁ ନିଜ ଦେହରେ,
କଳା ହେଲେହେଁ ମେଘେ ପ୍ରେମ-ପୁଲକେ
ଗୁରୁ ଚପଳା ଚୁମ୍ବେ ପଲ ପଲକେ ।୪।

ବିସ୍ତାର ଶାଖା ଭୁଜ ତରୁ ସୁବେଶେ
ଲଳିତ ଲତା ତନୁ ପ୍ରେମେ ଆଶ୍ଳେଷେ,
ନ ଛାଡ଼େ ତରୁ ସଙ୍ଗ କେବେ ବ୍ରତତୀ
ସର୍ବାଙ୍ଗ ଶତ ମୁଖେ ଚୁମ୍ବଇ ସତୀ ।୫।

କଠିନ ଗିରିବକ୍ଷ ଚୁମ୍ବେ ଝରଣା
ଅଙ୍ଗରେ ଅଙ୍ଗ ନନ୍ଦ ଶୁଭ୍ର ବରଣା,
ସହେ ଶଇଲ ତା'ର ପ୍ରପାତ ଖର
ପାଦରେ ସଦା ଯେହ୍ନେ ଗଳାର ହାର । ୬ ।

ଲଂଘି ସକଳ ବନ୍ଧୁ ପଥ ଦୁର୍ଗମ
ପ୍ରେମେ ଉଚ୍ଛୁଳେ ଲଭି ସିନ୍ଧୁ-ସଙ୍ଗମ,
ଚୁମ୍ବିଲେ ସିନ୍ଧୁନୀର ବିଶାଳ ବାହୁ
ଗାଢ଼ ଆଶ୍ଳେଷେ ଦୃଶ୍ୟ ନ ହୁଏ ଆଉ । ୭ ।

ଭୁଲି ସାଗର ନିଜ ମହତପଣ
ପ୍ରେମେ ଉନ୍ମାଦେ ଚୁମ୍ବେ ବେଲା ଚରଣ,
ମର୍ଯ୍ୟାଦା ଜଗି ମନା କରଇ ବେଲା
ଲାଗିଛି ଅନୁକ୍ଷଣ ଏ ପ୍ରୀତି-ଖେଳା । ୮ ।

ଚୁମ୍ବେ କଠିନ ଲୌହ କଠିନ-ଶିଳା
ଜଗତେ କି ବିଚିତ୍ର ଏ ପ୍ରେମ ଲୀଳା,
ଚୁମ୍ବନ ଆଲିଙ୍ଗନ ପୀରତି-ନିଷ୍ଠା
ଝଟକେ ତରଳାଏ ପାଷାଣ ହିଆ । ୯ ।

ଶୂନ୍ୟ ସଂସାର ମୋର ଶୂନ୍ୟ ସଦନ
ଚୁମ୍ବନ ଆଲିଙ୍ଗନ ମତେ ସ୍ୱପନ,
କିଏ ଦେବ ନେବ ପ୍ରେମ ପୀୟୂଷ
ନୀରବ ହାହାକାରେ ପିବ ଆୟୁଷ । ୧୦ ।

ମିଳିବ ନାହିଁକି ସେ ପୀରତି-ସୁଧା
ମୋ ଲାଗି କିଏ ଶୁଷ୍କ ବିଶ୍ୱ ବସୁଧା ?
ଆଦର ଆଲିଙ୍ଗନ ସ୍ନିଗ୍ଧ ଚୁମ୍ବନ
ଦେବ ନାହିଁ କି ପ୍ରାଣେ ପୁଣ୍ୟ ପ୍ରେରଣ ? । ୧୧ ।

ଜାଣେ ଅନ୍ତନ୍ତ ମୋର ପରାଣ ପତି
ସୁନ୍ଦର ସତ୍ୟ ଶିବ ଅଗତି ଗତି,
ରହିଛି ନିତି ତାଙ୍କ ବାଟ ଅନାଇଁ
ହୃଦ ପଲଙ୍କେ ଫୁଲ-ଶେଯ ସଜାଇ । ୧୨ ।

ଦେଖିବି ଅରେ ଯେବେ ପରାଣ ନାହ୍ନା
ଗ୍ରୁଡିବି ନାହିଁ ଭିଡ଼ି ଧରିବି ବାହ୍ନା,
ବିହ୍ୱଳ ମନଭରି ଚୁମ୍ବ ଆଶ୍ଳେଷ
ପୂରିବ ପ୍ରାଣ ପ୍ରାସ ହରିବ କ୍ଳେଶ । ୧୩ ।

ମିଶେ ସରିତ ଯଥା ମହାସାଗରେ
ଜଡ଼େ ବଲ୍ଲରୀ ଯଥା ତରୁ ଅଙ୍ଗରେ,
ନୀଳ ନୀରଦେ ଯଥା ଖେଳେ ଚପଳା
ନିର୍ଝର ଧାରା ଯଥା ଗିରି ମେଖଳା । ୧୪ ।

ନାଚେ ଲହରୀ ଯଥା ଶଶୀ ପରଶେ
ନଳିନୀ ଯଥା ରବିକରେ ହରଷେ,
ମିଳାଇ ପ୍ରାଣ ତଥା ପ୍ରାଣେଶ ପଦେ
ନାଚିବି ବିଶ୍ୱପ୍ରେମ ପରମାନନ୍ଦେ । ୧୫ ।

ଗିରି ସାଗର ନଦୀ ତପନ ଶଶୀ
ସର୍ବେ ଚୁମ୍ବିବେ ମୋତେ ପ୍ରେମେ ପରଶି,
ମୋ ପ୍ରାଣ ପ୍ରେମଧାରେ ଖୁସିବ ଧରା
ହେବ ଏ ବିଶ୍ୱ ମୋର ପ୍ରେମ-ପସରା । ୧୬

———

# ନିମିଷକ ଦେଖା

## ୮ ପଣ୍ଡିତ ଗୋଦାବରୀଶ ମିଶ୍ର, ଏମ୍. ଏ.

ନିମିଷକ ଦେଖା ଯଦି ହେ ଏବେ ଦିଅନ୍ତ ଆସି
ବୁକୁରେ ମୁଁ ତୋଳି ଧରନ୍ତି, ଦୂରବିଦେଶ ବାସି ।
ଚାଲି ଯେବେ ଗଲ ତୁରିତେ ଶେଷ ମେଲାଣି ଘେନି,
ନିମିଷେ ଅନାଇ ରହିଲି, ଫେରି ନୟନ ବେନି ।
ଏ ଜୀବନେ ଦେଖା ସତେ କି ହେଲା ନାହିଁ ପରତେ;
ତୁନି ହୋଇ ବସି ରହିଲି, କିବା ଭାବିଲି ଚିତ୍ତେ ।
ପଦେ ହେଲେ ବାଣୀ ବଦନୁଁ ନାହିଁ ସ୍ଫୁରିଲା ମୋର,
ମେଲାଣି ଟିକକ ଘେନି ମୁଁ ହୋଇଥାନ୍ତି ଅନ୍ତର ।
କ୍ଷଣକ ଲାଗି ବା ଯେବେ ହେ ଅବତରି ମରତେ,
କ୍ଷଣିକର କ୍ଷୀଣ ବନ୍ଧନେ ବାନ୍ଧିଥିଲ ଜଗତେ;
କ୍ଷଣିକ ସମ୍ପଦ ବରଣେ ଯଦି ଥିଲ ବା ଫିଟି
ପାରିଥାନ୍ତ ରହି ଅଧିକ ଆଉ କ୍ଷଣେ କି ଏଥି ?
କେତେ ଅବା ଆଶା ଅସୀମ କ୍ଷୁଦ୍ର ହୃଦୟେ ପୋଷି,
ଏତେଦୂର ଏହି ବିଦେଶେ କାହିଁ ଥିଲ ହେ ଆସି ?
କେତେ ବନ କେତେ ପାହାଡ଼ ଲଂଘି ବିଜନପଥେ,
ମିଳିଲ ଏ ନବ ରାଇଜେ କିବା ହରଷ ଚିତ୍ତେ !
ସେ ଆଶାରୁ କଣିକାଏ ବା ସେହି ହରଷୁ ତିଳେ,
ରଖି ହେଲେ ଯାଇ ଥାଆନ୍ତ ଚାଲି ଯିବାର ବେଳେ,
କିବା ଶୋହାଗିଣୀ ଅଧିକ ଥିଲ ଏ ବେଳା ଦେଖି,
ନ'ତେଜି ପ୍ୟାର ଯେ ମୋହନ ଆସି ମିଳିଲ ନିକି !
ଦିନେ ହେଲେ ଭୁଲିଥାଆନ୍ତ ତରୁଲତାର ମେଳେ,
ଅଙ୍ଗଶ୍ରମ ଫେଡ଼ି ଛାଇରେ ବସିଥାଆନ୍ତ ବାରେ;
ଏ ନଈ, ପୋଖରୀ ସଲିଳେ ସୁଖେ ପଖାଳି ମନୁ,
କି ଭାବ ପରାଣେ ଥିଲା ହେ ପୋଛିଥାଆନ୍ତ ମନୁ,

ନିମିଷକ ବନ୍ଧୁ ବିଦେଶେ ସବୁ ଭାଙ୍ଗିଲା କାହିଁ,
ଯେତେ ଆଶା ଥିଲା ହୃଦୟେ, ଲବେ ଫୁଟିଲାନାହିଁ ।
ରୋଗଶେଯ ପାଖେ ବାବୁ ହେ, ଗୃହିଁଥିଲି ମୁଁ ବସି,
କ୍ଷଣୁକ୍ଷଣେ ପୁଣି ବଦନ ଆନ ଆସିଲା ଦଶି ।
ବନ୍ଧୁଗଣ ପାଶୁଁ ନୟନେ ହୋଇଗଲେ ଅନ୍ତର,
ଯେତେବେଳେ ଜଣାପଡ଼ି ସେ ଗଲା ଅନ୍ତିମ ବେଳ ।
ମୁହିଁ ପାଶେ ବସି ରହିଲି ଏତେ ନିଠୁର ପ୍ରାଣ,
ନିରେଖିଲି ଉଡ଼ିଯିବାର ଶେଷପବନ ଧାଣ ।
ନିଜ ହାତେ ଧରୁଁ ତୁରିତେ କରିଦେଲି ଅନ୍ତର,
ନିଜ କାନ୍ଧେ ବହିନେଲି ମୁଁ କାହିଁ ବନ ଭିତର ।
ନିଜେ ମୁହିଁ ଚିତା ଅନଳ ମେଲି ଯତନେ ଜାଳି,
ଯେହ୍ନୁ ତୁମ ଜଳା ଚିତାରେ ବନେ ଆଆନ୍ତା ଜଳି ।
ବନ୍ଧୁଗଣ ମେଲେ ବାବୁ ହେ, ନେଲି ମଉନେ ବହି
ଫେରିଲି ଯା ପ୍ରାଣ ପ୍ରତିମା କାହିଁ ବିସର୍ଜି ଦେଇ;
ସେ ସକଳ କଥା ଏବେ ମୁଁ ନିତି ହେଉଛି ଭାଳି,
ଆଉ କ୍ଷଣେ ହେଲେ ତୁମର ସେବା ଥାଆନ୍ତି କରି ।
ପିକ ତରୁଡାଳେ ଗାଇଲେ, ନଭେ ଉଇଁଲେ ଶଶୀ,
ପଦ୍ମ ଗହ୍ୱଳରୁ ଅନାଇ ଫୁଲ ଫୁଟିଲେ ହସି;
ପିଲାମାନେ ମିଳି ସରଙ୍ଗେ ଖେଳି ବୁଲିବାବେଳେ,
ତୁମ ସେ ଅନ୍ତିମ ମୂରତି ଆସି ତଳେ ମୋ ଡୋଳେ ।
ଏ ସଞ୍ଜଳେ ତୁମେ ବାବୁ ହେ, କଲେ ଆଜି ବିହାର,
କେତେ ମନ୍ଦେ ସୁଖ ସମ୍ପଦ ବଢ଼ୁ ନ ଥାନ୍ତା ତାର !
ନିଶୀଥ ଅନ୍ଧାରେ ଗରଜି ଯେବେ ଆସଇ ଦଶି,
ତୁମ ଆଶେ ଯାମେ ଯାମେ ମୁଁ ରହେ ମଉନେ ବସି ।
କି ଦୂର ଅଜଣା ରାଇଜେ ବାବୁ, ରହିଲ ଯାଇ,
ନିମିଷକ ଦେଖା ବାହୁଡ଼ି ଆଉ ଦେଲ ସେ ନାହିଁ ।

———

# ଧଉଳି ପାହାଡ଼

୰ ରାୟସାହେବ ପଦ୍ମଚରଣ ପଟ୍ଟନାୟକ, ବି. ଏଲ୍

( ୧ )

ଧଉଳି ପାହାଡ଼, ଧଉଳି ପାହାଡ଼
କାହିଁକି ମଉନେ ରହିଛ ଆଜି,
ଦଇଆ ବାଲିରେ କେତେ ଖୋଜୁଥିବ
ଅତୀତ ଗୌରବ ଗରବ ରାଜି ।
ଧଉଳି ପାହାଡ଼, ଧଉଳି ପାହାଡ଼
ରୁକ୍ଷ ମୁଖ ଦୁଃଖ-ଧୂଳେ ଆବରି
ତପସ୍ୱୀ ପରାଏ ବସି ରହିଅଛ
କି ଭାବନା ଭାବି ଦିବା ଶର୍ବରୀ ।
ଧଉଳି ପାହାଡ଼, ଧଉଳି ପାହାଡ଼
ଲଜ୍ଜା ଦୁଃଖ ତେଜି ଟେକ ହେ ମଥା,
ଶୁଣାଅ ସେକାଳ ଗୌରବ କାହାଣୀ
କହ ହେ ସେ କାଳ ଗରବ କଥା ।
ଧଉଳି ପାହାଡ଼, ଧଉଳି ପାହାଡ଼
ଅଶୋକ ରାଜନ ରହିଲେ କାହିଁ ?
କାହିଁ ସେହି 'ଧର୍ମ କାହିଁ ବା ସେ କର୍ମ'
ଥିଲେ କି ଏକାଳେ ମିଳିବ ନାହିଁ ।

( ୨ )

ଧଉଳି ପାହାଡ଼, ଧଉଳି ପାହାଡ଼
ଶୋଭେ ତବ ଶିରେ ଗୌରବ ଟୀକା,
ଦୂରୁ ପର ଜନେ ନୃପତି ତନୟେ
ଶିଖାଇଛ ଧର୍ମ, ଦେଇଛ ଦୀକ୍ଷା !

କଳ୍ପନାରେ ପ୍ରତେ ହୁଏ କାଳପଣ
ଆସିଲେ ଉତ୍ତରୁ ସହସ୍ର ବୀର,
ରଣମଦେ ସର୍ବେ ଶ୍ୱାପଦ ସମାନ
ଜାଣନ୍ତୁ କପଣ କାଟିବେ ଶିର ।
ଯହିଁ ବାଟ କାଟି ଆସିଲେ ବହିଲା
ରକ୍ତ ସ୍ରୋତ ଆଗେ ସଙ୍କେତ ପଣ,
ଯହୁଁ ଗଲେ ତହିଁ ଖୋଜିଲେ କପଣ
ଅସି ମୁନେ ବେଗେ ନାଶିବେ ଅଣ ।
ପିଇ ପିଇ ରକ୍ତ ତୃଷା ନ ମେଣ୍ଟିଲା
ମହାନଦୀ ତୀରେ ପଶିଲେ ଆସି,
ପରଶିଲା କ୍ଷଣି ମହାନଦୀ ଜଳ
କରୁଁ କରବାଳ ପଡ଼ିଲା ଖସି ।
ଥର ଥର କଣ ଛନଥର ଅସି
ଧଣଲେ ଖସିଲା ଭୂତଳେ ଖରେ,
ଏକ ଅଦଭୂତ କଥା ଭାବ ଭାବ
ଚକିତେ ସମ୍ମୁଖେ ଗୁହିଁଲେ ବୀରେ ।
ପର୍ବତ ପ୍ରମାଣେ ଦାଉ ଦାଉ ହୋଇ
ଦୂରରେ ଦିଶିଲା ରକ୍ତ-ଅନଳ;
ମନେ ମନେ ବୀରେ ପ୍ରମାଦ ଗଣିଲେ
ଜାଣିଲେ ଏଥର ସରିଲା ବଳ ।
କରଯୋଡ଼ି ବୀରେ ନୃପତି ସମ୍ମୁଖେ
ଜଣାଇଲେ, "ନାଥ, ନ ଯିବା ଆଉ,
ଦେବ ଲୀଳାଭୂମି, ଏ କଳିଙ୍ଗ ଭୂମି;
ବୋଲୁଛନ୍ତି ଲୋକେ, ଏ ଦେଶ ଥାଉ ।"
ଦର୍ପେ ପଶୁପଣ ଭାସିଲେ ନୃପତି
"କାହିଁ କେଉଁଠାରେ ନାହିଁ ଦେବତା,
ଦେବତାର ଭୟ ଭୀରୁର ସମ୍ବଳ
ହୀନ ଦୁର୍ବଳର ପ୍ରାଣର କଥା ।
ଅସି ମୋ ଦେବତା ସବୁ ସାଧିବାକୁ
ଏଥିରୁ ବା ବଡ଼ କି ଅଛି ଆଉ ?
ଶୁଣିଛୁ କଳିଙ୍ଗ ବୀରଭୂମି ବୋଲି
ଜିଣିବ ଗଲେ ମୋ ଜୀବନ ଯାଉ

ହଠ ହଠ, ଖାରେ ତେଜ ହେ ବିଷାଦ,
ହେଜ ହେ ଅତୀତ ଗୌରବ କଥା,
କେତେ କହୁଣଲେ ଜିଣିଛୁ ଯେ ଦେଶ
କରିବା କଳିଙ୍ଗ ସେ ଦେଶ ମଥା !”
ଚିର ସାହସିକ କଳିଙ୍ଗ ତନୟେ
ହସି ଶତ୍ରୁ ସଙ୍ଗେ କଷିଲେ ବଳ,
କେତେ କାହିଁ ଶବ ପଡ଼ି ଗଡ଼ିଗଲେ
ଅରୁଣ ଦିଶିଲା ଦଇଆ ଜଳ ।
ବିଜୟ ଉଲ୍ଲାସେ ଅଶୋକ ରାଜନ
ଗଣୁଥିଲେ ବସି ଶତ୍ରୁଙ୍କ ମଥା,
ଧଉଳି ପାହାଡ଼ ତୁନ ତୁନ କରି
କିବା ତାଙ୍କ କାନେ କହିଲା କଥା ।

( ୩ )

ଧଉଳି ପାହାଡ଼, ଧଉଳି ପାହାଡ଼
କି କଥା କହିଲ ରାଜାଙ୍କ କାନେ !
କି କଥା ଗାଇଲ ଘଡ଼ିକେ ରାଜନ
ବୁଡ଼ିଲେ ଅପୂର୍ବ ସମାଧି-ଧ୍ୟାନେ !
ରଣୋନ୍ମାଦେ ମାତି-ବିଜୟ ଉଲ୍ଲାସେ
ଗଡ଼ୁଥିଲେ ତବ ଚରଣ ତଳେ,
ଗଢ଼ୁଥିଲେ କେତେ ଆଶାର ସଉଧ
କାହିଁକି ଭାସିଲେ ନୟନ ଜଳେ ।
ଧ୍ୟାନଭଙ୍ଗେ କ୍ଷଣେ ଚାହିଁଲେ ଚକିତେ
ତବ ଶିରେ ପୁଣି ପୋତିଲେ ମଥା,
‘କି କଲି’, ‘କି କଲି’, କହିଲେ ବିକଳେ
ଲଭିଲେ ବା ପ୍ରାଣେ ଦାରୁଣ ବ୍ୟଥା !
‘କି କଲି’, ‘କି କଲି’ କାହୁଁ ଆସି କାହିଁ
ପଡ଼ିଲିକି ଘୋର ଜିଗୀଷା-ଜାଲେ,
‘କିବା କଥା ଲାଗି ଏ ସବୁ ବହିଲି’,
ଲେଖିଲା କି ବିଧି ଏ ଦଶା ଭାଲେ !

'ଶୋଣିତର ସ୍ରୋତ ନିଜେ ବୁହାଇଲି'
କେମନେ ଏ ଶୋକ ନିଭିବ ମୋର,
ଆଗେ ଆଗେ ମୋର ଜଳାଇ ବସିଲି
ଜୀବନ ଶିଖା ତା ଭୀଷଣ ଘୋର !
'ଯେତେ ପ୍ରାଣୀ ନିଜେ ନାଶିଲି' ଏ କରେ
ଯେତେ ଦେଶ କଲି ଶ୍ମଶାନମୟ,
ଯେତେ ସୁଖସୌଧେ ଜାଳିଛି ଅନଳ'
ଯେତେ ଧ୍ରାଣେ ମୁହିଁ ଆଣିଛି ଭସ୍ମ ।
'କି ପିପାସା ଘେନି ଲଭିଲି ଜନମ
କାଳେ କାଳେ ତାର ନ ହେଲା ଶାନ୍ତ,
'ସାରା ଜୀବନଟା ଆବୋରି ବସିଲା
କି ଅସାର ଆଶା ମଧୁର ଭ୍ରାନ୍ତ ।
'ଲୁବ୍ଧ ମୃଗ ପରି ମୁଗ୍ଧ ହୋଇ ମୁହିଁ
ଇନ୍ଦ୍ରିୟର ସୁଖେ କାଟିଲି କାଳ
'ଜ୍ୱଳନ୍ତ ଅନଳେ ଇନ୍ଧନ ଯୋଗାଇ
ପାପେ ପୂର୍ଣ୍ଣ କଲି ଏହି ସଂସାର !
'ଧୂମକେତୁ ପରି ଭୀମପୁଚ୍ଛ ଧରି
ବୁଣିଲି ମଡ଼କ ଯାତନା ରାଜି,
'ଲୋକ-ଅଶ୍ରୁ-ରକ୍ତ ସ୍ରୋତେ ଭାସି ଭାସି
ଏ ଗିରି ଚରଣେ ଆସିଛି ଆଜି ।
'ଏ ଗିରି ଚରଣେ ଏହି ନଦୀକୂଳେ
ଲଭିଲଣି ଆଜି ପରମ ଶିକ୍ଷା,
'ଏ କଳିଙ୍ଗ ଦେଶ ହେଲେ ମୋର ଗୁରୁ
ଘେନିବି ଏଥି ମୋ ଜୀବନ ଦୀକ୍ଷା ।
'ଏହି ଦେଶେ ବସି ଏହି ନଦୀକୂଳେ
ଫେରାଇବି ମୋର ଜୀବନ ଗତି,
'ସାକ୍ଷୀ ରହ ମୋର ସର୍ବଦିଗପାଳ
ସାକ୍ଷୀ ରହ ମୋର ଜୀବନପନ୍ଥ !
'ଶୁଭଯୋଗେ ସତେ କଳିଙ୍ଗ ବିଜୟ
ଦଳିଲା ମୋ ମନ ଚଳନ୍ତ ଦଳ,
'ଦେବ ଦେଶେ ଆସି ଦେବ ଅନୁଗ୍ରହେ
ଭୋଗିଲି ଏ କେଉଁ ତପସ୍ୟା-ଫଳ !

'ଏହି ଉପଚାର ଏହି "ଧର୍ମ" ବଳ
ଜୀବନର ମୋର ହେଉ ଭୂଷଣ
'ସେହି ବଳେ ପ୍ରଭୁ ଘୁଞ୍ଚାଇ ଦିଅ ହେ
ଲକ୍ଷ ଲକ୍ଷ ପ୍ରାଣୀ ପ୍ରାଣ କମ୍ପଣ ।'

( ୪ )

ପ୍ରିୟ ପ୍ରତିବେଶୀ ଧଉଳ ପାହାଡ଼
ତୁମ ମୁଖ ମୁହିଁ ଦେଖୁଛି ନିତି,
ଗୌରବ ଶିଖରେ ଅନାଇଁ ଅନାଇଁ
କେତେ ଦିନ ମୋର ଯାଇଛି ବିତି ।
ସୁନ୍ଦର ମଧୁର ଗୋଧୂଳି ଗଗନେ
ଦିନ କାମ ସାରି ଦିବସ ପତି,
ସିନ୍ଦୂର ଲହରୀ ଖେଳାଇ ପଶ୍ଚିମେ
ଅସ୍ତାଚଳେ ବେଗେ କରନ୍ତି ଗତି,
ଗୋପାଳ କୃଷକ ସଙ୍ଗେ ଧେନୁପଲ
ଆବେଗ-ହୃଦୟେ ଫେରନ୍ତି ଘରେ,
ତିମିର ବସନେ ଆବୋରି ଶ୍ରୀଅଙ୍ଗ
ସନ୍ଧ୍ୟାଦେବୀ ବଶେ ଆସନ୍ତି ଖରେ ।
ମୁହିଁ ବସିଥାଏ ଧଉଳ ପାହାଡ଼,
ତବ ଶିରେ ଶୁଣେ ବିହଙ୍ଗ ଗୀତି,
କାନେ ବାଜିଯାଏ କେତେ ଯୁଗବାଣୀ
ବଢ଼ିଯାଏ ପ୍ରାଣେ ଅନନ୍ତ ପ୍ରୀତି,
ଘୂରିଯାଏ ବେଗେ ଚକ୍ଷୁ ଝଲସାଇ
ପୁଣ୍ୟ ମହିମାର ଅକ୍ଷୟ ଛବି,
ବ୍ୟାକୁଳ ପରାଣେ ଅନାଇ ଦେଖଇ
ବୁଡ଼ିଗଲେ ବେଗେ ପ୍ରଦୀପ୍ତ ରବି ।
ଏହିପରି ସିନା କଳିଙ୍ଗ-ତପନ
ବୁଡ଼ିଗଲେ ଦିନେ ଦଇଆ ତଟେ,
ଏହିପରି ସିନା କଳିଙ୍ଗ ସ୍ୱତନ୍ତ୍ର
ଖସିଗଲା କାଳ-ସାଗର ଜଠରେ ।
କେତେ କି ମହିମା କେତେ ଦୟା କ୍ଷମା
ଦଇଆ ଗରଭେ ଯାଇଛି ପଶି
ସାକ୍ଷୀ ତାର ପାଶେ ଦେବାଳୟଦଶ
ଦୂରେ ତାର ସାକ୍ଷୀ ତପନ ଶଶୀ

ଆସିଥିଲେ କି କେହି ସ୍ୱପନରେ ଭାସି
ସ୍ୱପନରେ ଖେଳି ଫେରିଲେ ଘରେ
ଏତେ ଉଚ୍ଚ ଆଶା ବାସନା କି ସତେ
ଦି'ଦିନେ ବିକଶି ଦି'ଦିନେ ସରେ !
ଯଶ-ମନ୍ଦିରର ସାମନ୍ତ ବୋଲିଣ
ଯିଲେ ଲଭିଥିଲେ ଗୌରବ ଟୀକା
ମହିମା ଉଜ୍ଜ୍ୱଳ ସେ ବରବପୁ କି
ପଡ଼ିଗଲା ଶେଷ ହେଲା ସେ ଶିକ୍ଷା ।
କେତେ ଜାତି ହାତ ଧରି ଆଗେ ଚଳି
ଆଗୁଆ ହୋଇଣ ରଖିଲେ ନାମ
ସତ୍ୟ ସାହସର ଜନମ ଭୂମିକୁ
ସତେ ମୋର ବିଧି ହୋଇଲେ ବାମ ।
ରାଜା ରାଜଧାନୀ ପ୍ରାସାଦ ସରିଛି
ଭାସିଗଲେ ସବେ ଦରିଆ ଜଳେ
ଗ୍ରୀଷ୍ମା ତାର କେହି ଖସି ନ ବୁଲଇ
ଏବେ ହେଲେ ଶୂନ୍ୟ ଧଉଳି ଚୂଳେ ।
ଲିଙ୍ଗରାଜ ତୁଙ୍ଗ ମନ୍ଦିର ରହିଛି,
ରହିଛି ତ ସେହି ଧଉଳି ଗିରି,
ରହିଛି ଅନାର୍ଯ୍ୟ ଖଣ୍ଡଗିରି-ଦରୀ,
ନ ଗାଏ କି ମୁଖେ ସେଦିନ ଗିରି ।
ନ କହେ କି ସେହି ହୃଦ-ବିଦାରଣ
କଳିଙ୍ଗ-ପୁରାଣ-ମହିମା କଥା ?
ଅତୀତ କାଳର ସୁଗୌରବ ବଖାଣି
ନ ଆଣେ କି ପ୍ରାଣେ ଦାରୁଣ ବ୍ୟଥା ?
ପ୍ରତି ଶିଳା ଖଣ୍ଡେ ପ୍ରତି ଟାଙ୍ଗି ମୁଣ୍ଡେ
ନ ଅଛି କି ଗୁନ୍ଥା କୀରତିରାଜି
ଏତେ ଆଇ ଆଇ ଏତେ ଦେଖି ଦେଖି
ଏ ଦେଶ ସପନ ନ ଯାଏ ଭାଜି ।
କହ ଦେବେ ମୋତେ, ଧଉଳି ପାହାଡ଼,
କହ ଭଲ ବାରେ ମୋ ମୁଖ ଚାହିଁ
ଧଉଳି ଦେଶରେ ସେ "ଧର୍ମ" ଜୀବନ
ଆସିବ କି ଆଉ ଆସିବ ନାହିଁ !

---

# ସାଧନା

## ୭ ଉତ୍କଳ ଭାରତୀ କୁନ୍ତଳା କୁମାରୀ ସାବତ୍

କେତେ ସାଧିଲଣି ଚରଣ ଧରଣ
 ପଦେ କଥା କହି ଯାଅ ହେ;
ପଦେ ସୁମଧୁର ବାଣୀ ବୋଲି ମୋତେ
 ଦୂରେ ଦୂରେ ଯାଉ ଥାଅ ।

ରୂପଟି ଲୁଚାଇ ରଖ ହେ ଯତନେ
 ପଛେ ବା ପଡ଼ିବ ଲୋଚନ,
ଅଛି ତ ବିଶାଳ ବିଶ୍ୱ-ପରି ପୂରି
 ତବ ରମ୍ୟ ରୂପ ମୋହନ ।

ପଦେ ଗୀତ ଗାଇ ଯାଅ ପ୍ରାଣ ଯନ୍ତ୍ରେ
 ଦରଫୁଟ କ୍ଷୁଦ୍ର ରାଗରେ,
ବିଶ୍ୱଭରା ତବ ସୁମଧୁର ସ୍ୱର
 ଶୁଣିବି ମୁଁ ଅନୁରାଗରେ ।

ଖାଲି, ତୁମର ଅଧର ହସଟିକ ଲାଗି
 ତୁମର ନୟନ ଚାହାଣୀ,
ଖାଲି ତୁମର ହୃଦର ପ୍ରିୟ ଅନୁଭୂତି
 ମାଗେଁ ମୁଁ ଅଧମ ପରାଣୀ ।

ସୁନାର ସଂସାର ରଖ ହେ ତୁମ୍ଭର
 ଗଢ଼ି ଆନ ପାଇଁ ଯତନେ,
ଖାଲି, ତୁମର ପଦ୍ମ ସଜକଞ୍ଜ ସୁଧା
 ଢାଳି ମାତ୍ର ଦିଅ ଅଧମେ ।

ତୁମ ମଣିହାର, ତୁମ ଐଶ୍ୱର୍ଯ୍ୟ
ଆଛି କାହା ପାଇଁ ଲେଖ ହେ,
ତୁମ ପାଦତଳେ ରହିବା ସକାଶ
ସୃଖଣ୍ଡକ ଭୂଇଁ ରଖ ହେ ।

ତୁମର ବିଭୂତି ତୁମର ଶକତି
ଆଉ କାହାପାଇଁ ବିତର,
ତୁମ ପ୍ରେମସୁଧା ଢାଳିଦିଅ ମୋତେ
ମେଲଇଛି ହୃଦ ପତର ।

ରାଜା, ମହାରାଜା କର ହେ କାହାକୁ
ସୁ ଧନ ଦିଅ ହେ ଅପାର,
କଙ୍କର ପରାଏ ରଖିଥାଅ ମୋତେ
ଜଗାଇଣ ତବ ଦୁଆର ।

———

# ଶେଷଗୀତ

୰ କାନ୍ତକବ ଲକ୍ଷ୍ମୀକାନ୍ତ ମହାପାତ୍ର, ବ. ଏ.

"କ ଗୀତ ଗାଇବ ? ମୋ
ଗୀତ ତ ଯାଇଛୁ ସର
ମୋ ମନ ଫୁଲଣା ଖିବ
ମନରୁ ଗଲଣି ମର ।
ଅର ତ ଗଲଣି ମୋର
ହୃଦୟର ବୀଣା ତାର,
ହର ତ ନେଲଣି କାଳ
ଅନ୍ତରର ଯେତେ ସାର ।

ସନ୍ତାପେ ହେଲଣି କର ରୋଧ,
ଆଉ ହେ କାହିଁକ ସଖେ, କର ଅନୁରୋଧ ।
ଶୁଣିଥିଲ ଦନେ ଯାହା ସେ କାଳର ଗୀତ,
ମଣିଥିଲ ଯାକୁ ଦନେ ଚନ୍ଦ୍ରେ ବମୋହନ,
ଏବେ ସେ ହେଲଣି ଝଞ୍ଜା ସନ୍ତାପ ପବନ
ହେଲଣି ଏକାଳେ ସବୁ କଥା ବପରୀତ !"
"ଅଛନ୍ତ ତ ସେହ ଚନ୍ଦ୍ର ତାର
ସେହ ମେଘ ସେହ ବର୍ଷା ଧାର,

ସେହ ଧର ସେହ ତ, ଆକାଶ,
ସେହ ରବ ନବ ତ ପ୍ରକାଶ
ସେହ ନଦୀ, ସେହ ଗିର ବନ,
ସେହ ଫୁଲ ସେହ ପ୍ରିୟଜନ,
ସେହ ଘଛ, ସେହ ତ ପତର,
ତେବେ ଆଜ କାହିଁକ କାତର ?"

ସତ ଗ୍ଲାନି ଅଛୁ ସବୁ ଥିଲା ଯେଉଁଭଳି
ସେମାନେ ତ ଏବେ ଆଉ କାହିଁ ପଶୁରନ୍ତ ନାହିଁ,
ଅବହେଳା ଅନୁତାପେ ସଦା ଜଳି ଜଳି
ମୋ ମନଟା କି ପ୍ରକାରେ ଗଲାଣି ବଦଳି ।"

"ଆଚ୍ଛା ଆଚ୍ଛା, ପଦେ ଅଧେ
ଅରେ ଭଲ ମନେ କର,
ଯାହା ଆଗେ ମନେ ପଡ଼େ
ଏଣୁ ତେଣୁ ପଦେ ଧର ।

ଭଲ ମନ୍ଦ ପାଇଁ ତୁମେ
କିଛୁ ମନେ କର ନାହିଁ,
ଦିଲ୍ ଖୋସ ହୋଇଯିବ
ଗୀତ ପଦେ ଦେଲେ ଗାଇ ।"

କି ଆଶ୍ଚର୍ଯ୍ୟ, ତୁମ୍ଭେ ତେବେ
ବୁଝୁନାହଁ ମୋର କଥା ।
ତେବେ ହେଜ ପାରୁନାହଁ
ମୋର ମରମର ବ୍ୟଥା !

ଶୁଣ, ଶୁଣ, ଶୁଣ ତେବେ
କହୁଛୁ ସକଳ ଫେଡ଼ି,
ମୁକୁଳାଇ ଚିର ରୁଦ୍ଧ
ନିଭୃତ ହୃଦୟ ପେଡ଼ି ।

ଖେଦ ତାପେ ଜର ଜର
ହୃଦୟନ୍ତ୍ର କଳଙ୍କିତ,
ସେଥିରେ କିପରି ଭଲା
କହୁଛ ଗାଇବ ଗୀତ ?

ଯେବେ ବା ଗାଇବି, ତେବେ
ଯିଏ ବା ହୃଦୟ ଭଙ୍ଗି,
ମନ, ପ୍ରାଣ, ଚିତ୍ତ ବୃତ୍ତି
ହୋଇଯିବେ ତାର ସାଙ୍ଗି ।

ଜଳୁଛି ଏ ଭବ ରାଶି
ତାହା ସଙ୍ଗେ ଯିବ ଭାସି,
ପଞ୍ଚଭୂତେ ଗଢ଼ା ଦେହୁ
ତୁଟିଯିବ ଆକର୍ଷଣ,
ପରମାଣୁ ରୂପେ ସର୍ବେ
ଆନ୍ଦୋଳିବେ ନିଜଗୁଣ ।

ପ୍ରକୃତି ଗ୍ରନ୍ଥିର ରନ୍ଧ୍ର
ଶିହରିବ ଦଶ ଦିଶ;
ଆକାଶ ପାତାଳେ ଦେବେ
ପ୍ରତିଧ୍ୱନି ଅହର୍ନିଶ ।

ମାର୍ତ୍ତଣ୍ଡ ଅଂଶରୁ ଗଡ଼ି
ପଡ଼ିବ ସଲିଳ ଧାର,
ସମୁଦ୍ରୁଁ ଉଠିବ ବହ୍ନି
ଚତୁର୍ଦ୍ଦିଗେ ହା ହା କାର ।

ତୁମ୍ଭେ ଯିଏ, ମୁହିଁ ଆଦି
ନ ରହିବା ବିଶ୍ୱ ପରେ,
ନ ରହିବ ବିଶ୍ୱ, ଲୀନ
ମହା ଧୂମ ଅନ୍ଧକାରେ !
ତେବେ ଯଦି ଗୀତ ପାଇଁ
ଜନ୍ମିଛି ତବ ପ୍ରୀତି
ଶୁଣ ମୁଁ ଗାଇବି ମୋର
ଜୀବନର ଶେଷ ଗୀତ ।

———

# ପୋଥିଘର

## ଅଜୟଚନ୍ଦ୍ର ଦାସ

---

୧

ସ୍ୱର୍ଗାରୂଢ଼-ମହାମହଙ୍କ
ସଙ୍ଗେ କାଟଇଁ ଦନ,
ଯେଣେ ଅନାଇଲେ ଦଇବେ
ଦେଖେ ଶ୍ରେଷ୍ଠ ଆସୀନ,
ଅଁଟନ୍ତ୍ର ବାନ୍ଧବ ସେ ମୋର
ଚିରନ୍ତନ ପ୍ରବର,
କଥାଭାଷା ତାଙ୍କ ସହିତେ
ହୁଏଁ ଜଣି ବାସର ।

୨

ସୁଖ-ସ୍ୱାର୍ଥୀ କିଁର ତାହାଙ୍କୁ
ଦୁଃଖେ ତାଙ୍କ ସକାଶ
* ଘଟକେ ଯେଜମା ମାନସେ
ଅବରୋଧ ଆଶ୍ୱାସ;
ତାଙ୍କଠାରେ ଋଣ ଯାବତ .
ସହୁଁ ପଡ଼ଇ ମନେ,
କୃତଜ୍ଞତା ଅଶ୍ରୁ-ସଲିଲ
ଉଚ୍ଛୁଳିଇ ନୟନେ ।

---

* ଧାଇଁବା ଅର୍ଥରେ

୩

ତାଙ୍କ ହୃଦ ଆଶା ଭାବନା
ଅନୁସର ହୃଦୟେ,
ଭ୍ରମେ ସୂତ-ମେଳେ ସୁଖ
ପ୍ରତଲେମ ସମୟେ;
ଗୁଣାବଳୀ କରେ କୀର୍ତ୍ତନ
ଦୋଷପାକ ନନ୍ଦନ୍ତି,
ବନସ୍ତେ ପ୍ରଶାନ୍ତ ଆଦର୍ଶ
ଉପଦେଶ ଯେ ନଅନ୍ତି ।

୪

ବାନ୍ଧଅଛୁ ଆଶା ଅଚରେ
ଗ୍ରନ୍ଥବାର-ବର୍ଗନ୍ଧ
ଶାଶ୍ୱତ ଭ୍ରମିବ ନଗ୍ରେଲେ
ପୁଣ୍ୟଶ୍ଳୋକଙ୍କ ସଙ୍ଗ;
ଏ ମୃତ୍ତିକା-ପିଣ୍ଡ ପରସ୍ତେ
ପଟ୍ଟେ ପଟ୍ଟେ ବନାଶ
ନ ହେଉ ମୋ ନାମ ଧରଣୁ
ପୁଣି ଏଥକ ଆଶ ।

---

Southey's Library ପଦ୍ୟର ଅବଲମ୍ବନରେ ଲିଖିତ ।

# ମକର ଚାଉଳ

## ଡକ୍ଟର ହରେକୃଷ୍ଣ ମହତାବ୍

ଆଶା ନିରାଶାର          ଢିପଖାଲ କେତେ
    ପାର ହୋଇଛୁ ମେ ବରଷଯାକ
ଭରସା ଥିଲା ନାଁ          ଆଣିବ ଘରକୁ
    ପରିଶ୍ରମ ଫଳ ଏତେଗୁଡ଼ାକ ।
ବୁଣିଦେଲା ପରେ          ଇନ୍ଦ୍ରଙ୍କ ଦୟାରୁ
    ବରଷିଲା ପାଣି ଉଠିଲା ଗଜା
ପୁଣି ହେଲା ଦକା          ଗଜା ମରୁଡ଼ିକ
    ସରିଯିବ ସବୁ ସଂସାର ମଜା ।
ପାଣି ବରଷିଲା          ଗଜା ପତରିଲା
    କୋମଳ ଶିଶୁର ସୁହାସ ଯେନ
ହିଡ଼ମୂଳେ ଥାଇ          ଚାହିଁ କିଆରୀକୁ
    ଭରିଗଲା ତାର ନୟନ ବେନ ।
ପିତାର ଯତନ          ପାଗଯୋଗ ପାଇ
    ଧୀରେ ଧୀରେ ଶିଶୁ ହେଲା କିଶୋର
ତଥାପି ଆଶଙ୍କା          ରହିଛି ଚାଷୀର
    କାଳେ ଅନାବୃଷ୍ଟି ହୋଇବ ଘୋର ।
ଛାଡ଼ିଗଲା ମେଘ          ଉଡ଼ିଗଲା ହଂସା
    କାତରେ ଦେଖିଲା ବିଲକୁ ଯାଇ,
ମଉଳି ପଡ଼ିଛି ,          ସୁଶ୍ୟାମଳ ତନୁ
    ଆଉ ସେ ସତେଜ ବଞ୍ଚିବ ନାହିଁ ।
ପାଣି ବୋହି ବୋହି          ବାଢ଼ଦନ ଗଲା
    ଶେଷରେ ବଞ୍ଚାଇ ରଖିଲା ପ୍ରାଣ,
ତଥାପି ବିପଦ          ନ ଛାଡ଼େ ଚାଷୀକୁ
    ପୋକ ଲାଗିଗଲେ ସରିଲା ଜାଣ ।

ବରଷ ସବୁରୁ    ଅବଶେଷେ ଯେବେ
    ଫୁଲ୍ ଖେଳାଇଲା ଧାନ କିଆରି,
କୁଣ୍ଡେ ମୋଟ ହେଲା    ଗୁଚ୍ଛ କୁମ୍ଭକର
    ଝଡ଼ ପୁଣି ହେଲା ଆସି ଭଗାର ।
ସେଥିରୁ ଉଧୁର    କାନ୍ଦ କାନ୍ଦ ହୋଇ
    ଫଳ ଭରେ ନଇଁ ପଡ଼ିଲା ମଥା,
ନୂଆ ହୋଇ ବୋହୂ    ଗର୍ଭବତୀ ହେଲେ
    ମୁଣ୍ଡ ପୋତିଦିଏ ସରମେ ଯଥା ।
ବଢ଼ି ପବନରୁ    ପାରହୋଇ ପୁଣି
    ପାଚିଲା ଫଳ ତ ଶୁଖିଲା ଖଡ଼,
ଦଇବ ବିପଦ    ଏଡ଼ିଗଲା ସିନା
    ରହିଛି ମଣିଷ ବିପଦ ବଡ଼ ।
ଖଳବଳ କରି    କାଲେ କେହି ଆସି
    କାଟିନେବେ ଧାନ ବିଲ ଉପରୁ
ଅବା କେହି ଆସି    ନେଇଯିବ ସବୁ
    କଟା ଧାନ ଖଳାବାଡ଼ି ଥାନରୁ ।
ଯାଇଛି ଯେତେକ    ବିପଦ ଆପଦ
    ପିଟା ମଲା କାମ ସରିଲା ଆସି,
ଅବଶେଷେ ଫଳ    ଆସିଛି ହାତକୁ
    ଯାଉଛି ହୃଦସ୍ତୁ ଆନନ୍ଦେ ଭାସି ।
କେତେ ପରିଶ୍ରମେ    କେତେ ଉଦବେଗେ
    ମିଳିଛି ଯେ ଧନ କୃଷୀ ହାତରେ,
ଆଗ ଦେବତାଙ୍କୁ    ଭୋଗ ନ ଲଗାଇ
    କପରି ଆଣିବ ନିଜ କାମରେ ।
କୃଷୀର ସମ୍ବଳ    ମକର କୃହଲ
    ଯେନା ହେଉ ଦେବ ଏହି ମିନତି,
ଏତିକି ଅଭସ୍ତୁ    ଦିଅନ୍ତୁ କୃଷୀକୁ
    ନ ରହୁ ଜଗତେ ତାର ବିପତ୍ତି ।

———

# ପାଶୋରି ଦେଲିରେ ଶିମୁଳି ପାଳ

## ଶ୍ରୀ କାଳନ୍ଦୀ ଚରଣ ପାଣିଗ୍ରାହୀ

ଭୁଲିଗଲି ମୋର ଶ୍ରେଷ୍ଠ ଘରଟିର
ପୁରୁଣା ମାଟି—
ଦୂର ଦିଗନ୍ତ ଧାନ କିଲେ କେତେ
ଖେଳିଛୁ ଖେଳ
ମାନି ନାହିଁ ଖରା ବରଷା ପବନ
ପିଚ୍ଛିଳ ବାଟ
ଶଇଶବ ପ୍ରିୟ ବନ୍ଧନ ସବୁ
ଆସିଲି କାଟି !
ଦୂର ଗାଆଁ କୋଳେ ବୁଲୁଥିଲି ମୋର
ଗୋଧୂଳି-ବେଳ
ଶିଶୁ ସାଥି ମେଳେ ବସୁଥିଲି କେତେ
ସୁଖର ହାଟ
କେତେ ପ୍ରିୟ ସ୍ମୃତି ଅନୁଭୂତିମସ୍ତ
ଅତୀତ କାଳ
ଦେଇଛି ଛୁଇଁ ଆଜ ପାଶୋରି ଦେଲିରେ
ଶିମୁଳି ପାଳ !

ଶୀତର ସକାଳେ ଆସୁଥିଲି ଯେବେ
କୁହୁଡ଼ି ଘୋଟି
ଧଳା ପରଦାଟି ପକାଇ ଅଦୂର
ପୁନାଗ ବନେ
କନକ ଅଧରେ ହସି ଦେଇ ରବି
ଉଠଇ ଉଇଁ
ନୂଆବୋହୂ ପରି ଲୁଚିଯାଏ କାହିଁ
କୁହୁଡ଼ି ଘୋଟି !

ହଜିଗଲା କଥା ଗୋଟି ଗୋଟି ଯେତେ
ପଡ଼ଇ ମନେ
ବିମୁଖ ପ୍ରେୟସୀ ପରି ଏ ଯମ୍ନାକୁ
ଲୁଡ଼ିଲି ମୁହିଁ
କେତେ ପ୍ରିୟ ସ୍ମୃତି ଅନୁଭୂତିମୟ
ଅତୀତ କାଳ
ତୋତେ ଦେଖି ଆଜ ପାଶୋର ଦେଲିରେ
ଶିମୁଳି ପାଳ !

ମୋ ପ୍ରିୟ ସାଗରତୀରେ ନିରେଖିଛୁ
ସୁଦୂର ପଥେ
କେତେ ରେ ବିଳାପ କେତେ ହସ ଖେଳ
ବାଲୁକା ତଟରେ
ସାକ୍ଷୀ ତାହାର ଏ ନୀଳ ଆକାଶେ
ଶୁକ ତାରା
କରୁଣ ବେଦନା ଲୁଚ୍ଛଇ ଗୁହିଁଚ
ମରମ ଗତେ ।
ଲହରୀ ଆଘାତେ ସଘନେ ବାଜଏ
ପରାଣ ପରେ
ଫିଟାଇ ଦେଇଛି କଣ୍ଠ ମୋହର
ଗୀତିର ଧ୍ୱନି !
ସବୁପ୍ରିୟ ସ୍ମୃତି ଅନୁଭୂତିମୟ
ଅତୀତ କାଳ
ତୋତେ ଚାହିଁ ଆଜ ପାଶୋର ଦେଲିରେ
ଶିମୁଳି ପାଳ !

ମହାନଦୀପରେ ଆସିଣ ଗୋଧୂଳି
ଯାଇଛି ବସି
ଆର ପାରେ ଉଡ଼ିଯାଏ ଅଗଣନ
ବାଦୁଡ଼ି କୁଳ

ନାଉଶୀ କୁହାଟେ ଚେତନା ଜାଗିଲା
ଚକିତ କବି
ପଠା-କାଶବନେ ଝଙ୍କି ଉଠିଲା
ତରୁଣ ଗୀତ ।
ଦୂର ପାହାଡ଼ରେ କେତେ କଳାମେଘ
ହୋଇଲା ଠୁଳ
ମହାନଦୀ ତୀରେ ଫୁଟି ଉଠେ ଝଉ
ନୂତନ ଛବି !
ସବୁ ପ୍ରିୟ ସ୍ମୃତି ଅନୁଭୂତିମୟ
ଅତୀତ କାଳ
ତୋତେ ଗୁନ୍ଥି ଆଜି ପାଶୋର ଦେଳରେ
ଶିମୁଳି ପାଳ !

କି ଗୀତ ତୋ ଆଗେ ଗାଇବି କହରେ
ଶିମୁଳି ପାଳ !
ରକତ ମୋହର ବରଫ, ହାଡ଼ ଯେ
ହୋଇଛି ପାଣି
କଣ୍ଠେ ଶୁଖିଛି ରସନା ବାସନା
ନ ଆସେ କଥା
ଛନ୍ଦିତ ମାନବ କାକୁତି କରଇ
ପତାଇ ଥାଳ ।
ପଥପରେ ଶତ ମାନବର ଶିଶୁ
ଦେଖାଏ କାନ
ଅକାଳେ ଝାଉଁଳି ପଡ଼ଇ କେତେରେ
ଜୀବନ-ଲତା !
ସବୁ ପ୍ରିୟ ସ୍ମୃତି ଅନୁଭୂତିମୟ
ଅତୀତ କାଳ
ତୋତେ ଗୁନ୍ଥି ଆଜି ପାଶୋର ଦେଳରେ
ଶିମୁଳି ପାଳ !

ସାନ୍ତାଳ ଝିଅ ଛଳନାବିହୀନ
ବଦନ ଶୋଭା
ବିକାର-ବିହୀନ ହାସ୍ୟ ତାହାର
ବିମଳ ଚନ୍ଦ୍ର
ସାଥିମେଳେ ହାତ ହଲାଇ ଚଳଇ
ସହଜ ଗତି
ମଧୁମାଳତୀର ମଞ୍ଜୁଶ୍ରୀ ଯେନ
ଶୋହୁଛି ଗଛ ।
ଦୂର ବନକୋଳୁଁ ଭାସି ଆସେ ତା'ର
ମଧୁର ଗୀତ
ରନ୍ଧ୍ର ରନ୍ଧ୍ର ମୋର ମରମେ ବାଜେ ତା'
ବଧୂର ଯତ—
ବନର ବିହଗୀ ପରଏ ତାହାର
ବିତଇ କାଳ
ତୋତେ ଖୁଣ୍ଟି ସବୁ ପାଶୋର ଦଏରେ
ଶିମୁଳି ପାଲ !

ଶୀତର ଗୋଧୂଳି ଶୀତଳ ତୋ କୋଳୁ
ଆସଇ ଗୁଳି
ବୁଡ଼ିଯାଏ ରବି ଉକୁଟାଇ ଛବି
ତୋହର ପରେ
ରହିଯାଏ ଆଖି ତୋର ଚୂଲେ ଲେଖି
ସୁନାର ଗାର ।
ସାନ୍ତାଳ ଯୁବା ବୀଣାରେ କି ସ୍ୱର
ଦିଅଇ ତାଳ
ଆବରଣ ହୀନ କଳା ଦେହେ ତା'ର
କି ରୂପ ଝରେ,
କଣ୍ଠେ ଲଗାଇ ଯବା ଫୁଲ ସମ
ପୋହଳା ହାର !

ବନର ବିହଙ୍ଗ ପଲ୍ଲବ ଛାଇାର
ବିତଇ କାଳ
ତୋତେ ଗୁନ୍ଥି ସବୁ ପାଶୋର ହୃଦରେ
ଶିମୁଳି ଫୁଲ !

ଦେଖିଲି ଗୋଧୂଳି କେତେ ନବ ନବ
ଲେଖିଲି ଛବି,
ମରମ ପୃଷ୍ଠରେ ନଭଲିଣି କେତେ
ନମେଘେ କଳି
ବାଟେ ଘାଟେ ଯେତେ ଦେଖିଲି ସୁଷମା
ବଖାଣି ନୋହେ
ଯେତେ ରୂପେ ପ୍ରାଣ ପୂରିଲା ରସର
ପରଶ ଲଭି ।
ନାହିଁତ କଳନା କେତେ ଶତପଥ
ଆସିଲି ଚଳି
ଯାପିଥିଲି କେତେ ଯାମିନୀ ନବଢ଼
ସୁଖର ମୋହେ—
ସବୁ ପ୍ରିୟ ସ୍ମୃତି ଅନୁଭୂତିମୟ
ଅତୀତ କାଳ
ତୋତେ ଦେଖି ଆଜ ପାଶୋର ଦେଲରେ
ଶିମୁଳି ଫୁଲ !

———

'ମୋ କବିତା' କବିତାଗୁଚ୍ଛରୁ ସଂଗୃହୀତ ।

# କୋଣାର୍କ

## ଡକ୍ଟର ମାୟାଧର ମାନସିଂହ

— ୧ —

ହେ କୋଣାର୍କ ବିଗତ-ଯୌବନା
ମୌନ-ଦୁଃଖେ ସୈକତ-ଶୟନା !
ତୋର ଏହି ଜୀର୍ଣ୍ଣ ଦେହେ ଅଦ୍ୟାପି ଗୋ ବିମୁଗ୍ଧ ନୟନେ
ସ୍ତବ୍ଧେ ବିଶ୍ୱ, କରୁଣାରେ ଢେଳ ଅଶ୍ରୁ ତୋ ଦୁଃଖ-ଶୟନେ ।
ଜଗତର ଶିଳ୍ପୀ-କବି ରୂପ-ରାଗ ଦେଖି ତୋହଠାରେ
ଅଶ୍ଳେଷ ଇଚ୍ଛର ତୋର ବୃନ୍ତ ଦେହେ, ଶୋଷି ପିପାସାରେ ।
ଅଙ୍ଗେ ଅଙ୍ଗେ ଚୁମ୍ବିବାକୁ ନିରବଧି କରଇ ଭାବନା
ତୋହରେ ଗୋ ଗତ-ଯଉବନା !

— ୨ —

ଅନନ୍ଧତେ ହେ ବେଳା ଶୋଭନେ,
ଯେବେ ତୁମ୍ଭେ ଉଠିଲ ଗଗନେ
ଭେଦଣ ସହସା-ନଦୀ-ନୀଳ-ବେଣୀ ସ୍ୱର୍ଣ୍ଣ-ସଇକତ
କ୍ଷୀରୋଦ ପ୍ରଶାନ୍ତ ଗର୍ଭୁ ବିଶ୍ୱରମା ବିଷ୍ଣୁ-ପତ୍ନୀ ବତ
ଅତର୍କିତେ ଫିଟିଥିବ ଏ ଦେଶର ଅଦ୍ଭୁତ ଲୋଚନ
କୋଟି ହସ୍ତ ବନ୍ଧ ହୋଇ କରିଥିବ ତୁମ୍ଭର ବନ୍ଦନ—
"ଜୟ ସ୍ୱର୍ଗନିବାସୀନୀ ଅବତୀର୍ଣ୍ଣା ମର୍ତ୍ତ୍ୟ ବିଭୂଷଣେ
ରୁକ୍ଷ ବିଶ୍ୱେ ଶୋଭା ବିତରଣେ !"

— ୩ —

ଭାରତର କବି କଳ୍ପନାରେ
ଜଗତର ବୁଦ୍ଧି ଅଜଣାରେ
ଅଜ୍ଞାତ ରହସ୍ୟମୟ ଶଇଶବ ଯାପିତ ତୋହର,
ଯେ ଦିନ ଚକିତ ଦୃଷ୍ଟି ବିଶ୍ୱର ଗୋ ପଡ଼ିଲା ତୋ' ପର

ଯୌବନ-ଲାବଣ୍ୟଲୀଳା ଖେଳୁଅଛୁ ଅଙ୍ଗେ ଅଙ୍ଗେ ତବ
ଫୁଟି ଉଠେ ଦେହେ ଦେହେ ସୁଲଳିତ ଅଙ୍ଗ ସଉଷ୍ଠବ
ମନ୍ତ୍ର ଶିଖି ଆସିଥିଲେ ମନ-ଜନ୍ମେ ମନର ସେ ପାରେ
ବାରଣତ କବି କଳ୍ପନାରେ ।

—୪—

ସହସା ହୋଇଲା ବିମଳିନ
ନଭେ ନଭେ ହୋଇଲା ବିଲୀନ
ଅଗଣିତ ତାରକାର ଦିବ୍ୟ ଜ୍ୟୋତି ରଜତ ଧବଳ,
ଲାଜେ ଲାଜେ ବ୍ୟୋମପଟେ ଲୁଚିଗଲେ ଶୀତାଂଶୁ ଶୀତଳ,
ଦୂର ନଗମାଳା ହେଲେ ଭକ୍ତି-ଭୟେ ଚକିତ-ପୁଲକ
ପଦ-ଚୁମ୍ବୀ ମହାସିନ୍ଧୁ ଗାଏ ସ୍ତବ, ଲହରୀ-ଅଳକ—
"ହେ ଗୁରୁଭୈରବ କାନ୍ତି ମନୁଷ୍ୟର, ମନ୍ତ୍ର ମୋ ପୂଜନ
ଧନ୍ୟ ହୁଏଁ ତୋହରେ ସେବଣ ।"

—୫—

ପୌର୍ଣ୍ଣମାସୀ ଶୁଭ୍ର ହାସ୍ୟତଳେ
ଧବଳିତ ସମୁଦ୍ର-ଲହରେ
ତାଳ ତାଳେ ଲାସ୍ୟେ ମାତି ଜଳଦେବୀ ଗାଇଲେ ତୋ' କଥା
ଓଷଧୀଶ ଜ୍ୟୋସ୍ନାପୁରେ ସିକ୍ତ କଲେ ତୋ' ତରୁଣ ମଥା,
ତୋର ମୌନ କଣ୍ଠାଗ୍ରରେ ବ୍ୟୋମଲକ୍ଷ୍ମୀ ମାର୍ଗେ ହୋଇ ମୂଢ଼
ଅବତରି, କଣ୍ଠେ କଣ୍ଠେ କହିଗଲେ ବାରତା ନିଗୂଢ଼ ।
ଅପସରୀ ବନ୍ଦିଲେ ତୋତେ ସ୍ୱର୍ଗୁଁ ଆସି କୌମୁଦୀକଲ୍ଲୋଳେ
ପାରିଜାତ ପୁଷ୍ପ ଉପହାରେ ।

—୬—

ଜୀବନର ଯେତେ ଲୀଳା ଖେଳା
ଅଙ୍ଗେ ତୁହି ଧରିଲୁ ଛବିଳା,
ଶିଖିଲା ତୋହଠୁଁ ରାଜା ଶବ୍ଦ ମୁଖେ ଯୁଦ୍ଧ ଅଭିଯାନ
ପାର୍ଶ୍ୱ ମନ୍ତ୍ରୀ ରାଜା ପାଶେ କରିବାର ଯୁକ୍ତି ମନ୍ତ୍ରଦାନ ।

ପ୍ରେମିକ ପ୍ରେମିକା ଆସି ତୋହଠାରୁ ଶିଖିଲେ ଆଶ୍ଳେଷ
ବୀର ପୁଣି ମୁକ୍ତିଭୂମେ ଅସି ସନ୍ଧି କୌଶଳ ବିଶେଷ,
ବୈଜ୍ଞବୃନ୍ଦ ଅବଧାନ ଚଟଶାଳେ ଆସିବାର ପିଲା ।
ହେ ପାଷାଣି ! ତୋଠାରୁ ଶିଖିଲା ।

— ୭ —

ବିଶ୍ୱେ ଯେତେ ବିକାଶ ରୂପର
ଯେତେ ରୂପ-ବିଳାସ ଚତୁର
ପ୍ରକୃତିର ଅଙ୍ଗେ ଅଙ୍ଗେ ସୁଷମାର ଯେତେକ ପ୍ରକଟ
ମାନବର ମନେ ମନେ ସୁଷମାର ଯେତେକ ସଙ୍ଘଟ
ତୋତେହିଁ ପାଷାଣ କବି ଅତି ସ୍ନେହେ ନିବେଦିଲେ ବସି
ଅନନ୍ତ କବିତାଧାରା ଜହ୍ନଲେ ସେ ତୋ ଦେହ ପରଶି ।
ପ୍ରସ୍ତରେ ପ୍ରସ୍ତରେ ତୋର ସୁନିହିତ କବିତା ସମ୍ଭାର
ହେ ପାଷାଣ-କବିତା-ଝଙ୍କାର ।

— ୮ —

ସଉଧ କୁଟୀର ଶତ ଶତ
ଉପହାର ପୁଷ୍ପହାର ବତ
ତୋଳେ ଯେଥି ତୁଙ୍ଗ ଶିର ସର୍ବେ ଗର୍ବେ ଟେକିଲେ କ୍ଷଣକେ
ବିଶାଳ ନଗରୀ, ସିନ୍ଧୁ-ଅଳଟୀକା ହସିଲା ପୁଲକେ ।
ଦିଗ୍‌ବିଦିଗୁଁ ସିନ୍ଧୁ ଡେଇଁ ଭକ୍ତିଭରେ ନୁଆଁ ଝୁଣ ପାଲ
ଆସିଲେ ବହୁଜପନ୍ତ ପୂଜି ତୋତେ ଉଡ଼ାଇ ଚଳିଲ ।
ଆନୀତ ମାଣିକ୍ୟ ରତ୍ନେ ତୋର ଅଙ୍ଗ ହେଲା ଆଲୋକିତ
କକ୍ଷ ତୋର ଜ୍ୟୋତିରେ ଚକିତ ।

— ୯ —

ରାଜା ତେଜି ପ୍ରାସାଦ ବିଭବ
ଭୁଲି ଚଳନ୍ତ ସୁଖ-ଅନୁଭବ,
ଜାନୁ ପାତି ତୋର ମୁଖେ ରହିଁ କଟାଇଲେ ଦିନ;
ସନ୍ନ୍ୟାସୀ ତୋ ପଦତଳେ ତପ କରି ତନୁ କଲେ କ୍ଷୀଣ,

ଦେଖୁ ଦେଖୁ ସମାଗତା ନାସ୍ତି ପଦ-କଙ୍କିଣୀ-ଝମ୍ପନେ
ଢଳେ ମୁଖଶତ ଦନେ ବକ୍ଷ ତୋର, ଲକ୍ଷାରସ ବର୍ଣ୍ଣେ
ରଞ୍ଜିଲେ ମଧୁରେ ଢଳ ଭୂମି ତୋର ଶୋଭାର ଉତ୍ସବ
ଲଜ୍ଜା ଦେଇ ପୁଷ୍ପ ବଇଭବ ।

—୧୦—

ନୃତ୍ୟ ହେଲ ଶାନ୍ତି-ଶାନ୍ତକାଳ
କ୍ରମେ ହେଲ ପକ୍ବଢ କଙ୍କାଳ
ଗଉରବ-ଅସହିଷ୍ଣୁ ଭୁଲାଇଲେ ନୟନ ବିଭ୍ରମ
ସୁକୋମଳ ଗ୍ରୀବା ତୋର ନମ୍ର ଭଙ୍ଗେ ହୋଇଲା ବଙ୍କିମ ।
ଯାଦୁକରୀ ହାସ୍ୟ ତୋର ସେ ନିଷ୍ଠୁରେ କରୁଣାର କଣ
ନ ପାରିଲା ଉପୁଜାଇ; ଚୂର୍ଣ୍ଣ କଲେ ନୂର ପ୍ରହରଣ ।
ବିଶ୍ୱ ଦେଖେ ଆଜିମାଜି ସେ ଶୋଭାର ଖଣ୍ଡିତ କଂକାଳ
ଲାବଣ୍ୟର ନଷ୍ଟ ଅସ୍ଥିମାଳ ।

—୧୧—

ତେବେହେଁ ସେ ଅସ୍ଥି ଭେଦ ଆଜି
ତରୁଣର ଜ୍ୟୋତି ପଡ଼େ ଖଜି,
ପକ୍ବ କେଶେ ଜୀର୍ଣ୍ଣବେଶେ ତେବେ ହେଁ ଗୋ ଯୌବନର ବିଭା
ଫୁଟି ଉଠେ, ସାୟନ୍ତନ ଘନପରେ ଅସ୍ତରାଗ କିବା ।
ବିମୁଗ୍ଧ ସଂସାର ତୋର ପାଦତଳେ ଅଦ୍ୟାପି ସୁନ୍ଦରୀ !
ସମଦୁଃଖେ କାନ୍ଦଇଥାଏ, ବ୍ୟାକୁଳିତ, ଆପଣାର ପରି
ଆମୂଷ କଲ୍ୟାଣ ପାଇଁ ଲଭେ ବିଶ୍ୱ ସୁଆଶିଷ ରାଜି
ତେବେ ହେଁ ତା' ଅସ୍ଥିରାଜି ଆଜି ।

# ଉପମା ବିରୋଧ

ବୈକୁଣ୍ଠନାଥ ପଟ୍ଟନାୟକ, ଏମ୍. ଏ., ଡ଼ି., ଇଡ଼.

---

ମଳୟକୁ ପ୍ରିୟାର ନିଃଶ୍ୱାସ ବୋଲି
ପଛକୁ ଦେଲି ମୁଁ ଗୃହିଁ,
ବକ୍ଷେ ବାଜିଲା ବୈଶାଖ ଶ୍ୱାସ
ଫେରିଲି ଲଜ୍ଜା ପାଇ । ୧ ।
ଚଂପକେ ପ୍ରିୟା ଗୌର କାନ୍ତି,
ବନ୍ଧୁଲି ଅଧର ଶୋଭା,
ଆଦ୍ୟ ନିଶାରେ ମଳିନ ଉଭୟ
କାନ୍ତ ମାନସ ଲୋଭ । ୨ ।
ପ୍ରଥମ ଆଷାଢ଼ ବାରିବାହ ବକ୍ଷେ
କୃଷ୍ଣ ତା କେଶ ଦାମ,
ବିଦ୍ୟୁତେ ପ୍ରିୟା ଦୀପ୍ତ ଛଟକ
ପରଶେ ଜନମ କାମ । ୩ ।
ବାଧିଲା ଭାଦରେ ପଳିତ କାନ୍ତି !
ଦାମିନୀ ଦୃପ୍ତ ପୀଡ଼ା !
କୁହେଳି ସମାନ ଶୂନ୍ୟ ସଦନ
କଲା କୌତୁକ କ୍ରୀଡ଼ା । ୪ ।
ଗୋଲାପ ପ୍ରିୟାର ପୂର୍ଣ୍ଣ ମାଧୁରୀ
ଝଳିଲି କରନ୍ତୁ ସ୍ୱୈର,
ଜଡ଼ିତ ବକ୍ଷେ କଣ୍ଟକ ପୀଡ଼ା !
ନ ସହଇ ଗୁଣ ଘୋର । ୫ ।
କୌମୁଦୀ ଭରା ମାଧବୀ ନିଶି ତା'
ସ୍ନିଗ୍ଧ ସୁହାଣୀ ପରି !
ସନ୍ଧ୍ୟାରେ ଆଦ୍ୟ-ଅନୁରାଗ-ବ୍ରୀଡ଼ା
ଭୁଲି ମୁଁ ଆତ୍ମହରା । ୬ ।

ପଶ୍ଚାତେ ତାର ଅମା ଅନ୍ଧାର !
ମୃତ୍ୟୁ ଅଟ୍ଟହାସ !
ଅବଶ ହେଲା ମୋ ସର୍ବ ଅଙ୍ଗ
ଜଡ଼ୀଭୂତ ଯେତେ ପ୍ରାସ । ୭ ।
ମଲ୍ଲିକା ଦାମେ ନାହିଁ ପ୍ରିୟା ହାସ
ମୃତ୍ୟୁ ଦନ୍ତ ଶତ !
ଭୁଲିଲି ବା ଯେନ ରଚିଲେ କାବ୍ୟ
କବିଏ ଇଚ୍ଛା ମତ ? । ' ।
କା ବଳେ ସ୍ୱକୀୟା ପରକୀୟାଠାରେ
ଉପମାକୁ କଲେ ଶେଷ ?
ମୂର୍ଖମାନବ ଲାଗି ସାଇତିଲେ
ଭ୍ରାନ୍ତ ଯାତନା କ୍ଳେଶ । ୯ ।
ରୁକ୍ଷ ଏ ମରୁ-ବୃନ୍ଦାବନେ
ଉପମାର କାହିଁ ସ୍ଥାନ ?
ଗୋଲୋକରେ ରାସ ! କାହିଁ ବା ପ୍ରଣୟ ?
କଠିନ ଧରିବା ପ୍ରାଣ । ୧୦ ।

× × ×

ପ୍ରଭାତ ଭ୍ରମଣୁଁ ଫେରୁଥିଲି ଯବେ
ସଂସାର-କାରା-ଗେହେ,
କ୍ଷୀଣ କଣ୍ଠେ ଡାକିଲା ଦୁର୍ବା
ବ୍ୟଥିତ-ପ୍ରିୟାର ସ୍ନେହେ । ୧୧ ।
ଦେଖିଲି କ୍ଷୁଦ୍ର କୁସୁମେ ଜଡିତ
ସ୍ନିଗ୍ଧ ଶିଶିର ବିନ୍ଦୁ !
(ମୋର) ସାର୍ଥକ ପ୍ରୀତି-ଉପମା ପିପାସା
ଉଚ୍ଛୁଲେ ଅଶ୍ରୁ-ସିନ୍ଧୁ । ୧୨ ।
ଦଗ୍ଧ ହୃଦୟେ ରୋପି ସେ ଅଶ୍ରୁ
ଗର୍ବେ ଉଠିଲି ଗାଇ—
ପଢ଼ିଛୁ ଯେତେ ମୁଁ କାବ୍ୟ କବିତା
ଏ ଉପମା କାହିଁ ନାହିଁ । ୧୩ ।

# ଅସମାପିକା

ଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ, ବି. ଏ.

( ୧୯୩୮ ମସିହା ଡିସେମ୍ବର ୨୭ ତାରିଖ ଦିନ ନନ୍ଦକେଶ୍ୱରୀ ପଠାରେ ଓଡ଼ିଶାର ଶେଷ କେଶରୀ ରାଜା ସୁବର୍ଣ୍ଣ କେଶରୀଙ୍କ କନ୍ୟା ଏବଂ ଚୂଡ଼ଙ୍ଗ ଦେବଙ୍କ ଉପେକ୍ଷିତା ନନ୍ଦକାଙ୍କ ଭଗ୍ନ ସମାଧି ଦେଖି )

ଅତୀତରେ ସେଇ କଥା ମନେ ନାହିଁ, ଯାଇଅଛୁ ଭୁଲି,
ତଥାପି ଜାଣେନା କଆଁ ପଞ୍ଜରର ଏ ମ୍ଳାନ ଗୋଧୂଳି
ସ୍ମରଣ କରାଏ ତାହା ବାରେ ବାରେ ଆଜି ମୋର ମନେ
ଝଁରା କୁସୁମର ରାତି ସେଇ କଥା ବାହୁନେ ଗୋପନେ ।
ସନ୍ତରଣ କରି ହେଲେ ଶତାବ୍ଦୀର ସୁପ୍ତ ପାରାବାର
ଇତିହାସ ସେଇ କଥା ଆଜି ଏଠି କରଇ ପ୍ରଚାର ।

ଅଶ୍ରୁ-ସିକ୍ତ ଶୀତର ଆକାଶ
ମାଟିର ମଳିନ ବୁକେ ରଖେ ତାର ମୌନ ଦୀର୍ଘଶ୍ୱାସ ।
କାନ୍ଦହଠେ ଶୂନ୍ୟ ପଠା, ବାହୁନଇ ପାଶେ ଶୀର୍ଣ୍ଣବନ
କାନ୍ଦେନା କେବଳ ଏଥି ମଣିଷର କର୍ମକ୍ଳାନ୍ତ ମନ
ସମସ୍ତ ସେ ନାହିଁ
ଜୀବନର ରଣକ୍ଳାନ୍ତ ସୈନିକ ସେ ବେଳ କାହିଁ
ଛୁଟି ତାର କାହିଁ ?
କେବେ ଏକ ରାଜାର କୁମାରୀ
ଦୁନିଆଁ କୁ କହିଥିଲା "ମୁହିଁ ନାରୀ, ଆଗୋ ମୁହିଁ ନାରୀ ।"

ଜଗତର ମନେ ନାହିଁ, ଇତିହାସ ଯାଇଚି ତା ଭୁଲି
ତାହାର ମାଟିର ଦେହ ଧୂଳି ସାଥେ ହୋଇଚି ତ ଧୂଳି ।
ଅଛୁ ଖାଲି ବ୍ୟଥାର ଆଶ୍ୱାସ
ସ୍ମୃତିର ସାମଗ୍ରୀ ତାହା, ସ୍ମରଣର ଥିଲେ ଅବକାଶ ।

ଉତ୍କଳର ରାଜଜେମା ହେ ନନ୍ଦିକା!
ହେ କ୍ଷୁଧିତା ନାରୀ
ରାଜାର ତନୟା ଆଜି ମରିଅଛୁ,
ତୁମେ ଅଛ ମାତ୍ର ।
କିନ୍ତୁ ଚନ୍ଦ୍ରମା ନାରୀ ଆଜି ମଧ୍ୟ
ଅଛି ସେ ତ ବନ୍ଦୀ
ବ୍ୟର୍ଥତା ରଖିଛି ତାର ଜୟମାଳା
ନକ୍ଷପୁଟେ ସଞ୍ଚି ।
ରଜନୀର ଗୁପ୍ତ ପଥେ
ହୃଦୟର ସୁଡ଼ଙ୍ଗ ପ୍ରଦେଶେ
ଦାସ୍ୟ ସମତାର ବ୍ୟଥା
କୋଟି ପ୍ରାଣେ ଜାଗଇ ନିମିଷେ ।
ନାରୀର ଉଲଗ୍ନ ପ୍ରାଣ
ଭସ୍ମାବୃତ ତାର ଅଶ୍ରୁନୀର
ଆଜି ଯେ ଗଢ଼ିଛି ଏଥି
ରକ୍ତ ମାଂସେ ଏ ଭଙ୍ଗା ମନ୍ଦିର ।
ଅଭିଜାତ କରୁ ତ୍ରଣବାଦ
ନାରୀତ୍ୱର ପରମାଣୁ ଭୂଲିଅଛି କାଳର ପ୍ରମାଦ ।
ଏ ଜୀର୍ଣ୍ଣ ସମାଧି ତଳେ ପଢେ ରାଜ ସୁତାର ପଞ୍ଜର
ମାତର ଅମର ଚିହ୍ନ ନାରୀତ୍ୱର ନିର୍ଭୀକ ସ୍ୱାକ୍ଷର ।

ଶିଳାଲିପି ସମ
ଭଗ୍ନ ହୃଦୟର ସ୍ତବ ଗାଇଉଠେ କରୁଣ ନିର୍ମମ ।
ଜଗତ ପାରେନା ବୁଝି ନାହିଁ ସେ ନିଷ୍ଠୁର ବାଣୀ
ଅମାବାସ୍ୟା ସମ ତୁମେ ଆପଣାକୁ ଲଜ୍ଜାବତୀ ରାଣୀ
ରଖିଲ ଗୋପନ କରି ନେପଥ୍ୟରେ, ସେ ଅବଗୁଣ୍ଠନ
ବିଶ୍ୱର ମରମୀ ପ୍ରାଣେ ସିଂହାସନ କରିଛ ରଚନ ।
ରାତ୍ରିର ରହସ୍ୟ ଯଥା ସ୍ୱପ୍ନସ୍ୱାଦେର ତନ୍ଦ୍ରାତୁର ମନେ
ନିଜକୁ ଆବୃତ କରେ, ଅଧେ ନିଦ ଅଧେ ଜାଗରଣେ,
ତୁମେ ସେହିପରି
ନିଜକୁ ଗୋପନ କରି ଦୀପାନ୍ୱିତ କରିଛ ସୁନ୍ଦରୀ
"ନାରୀ ସଦା ନାରୀ"

ଏଇ ମନ୍ତ୍ର ଇଚ୍ଛ୍ୱାସେ
ହେ ରାଜ କୁମାରୀ
ଦେଇଅଛ ତୁମେ ଉପହାର
ଏଇ ତମ ବଞ୍ଚିବାର
ଚରମ କୌଶଳ
ହେ ନନ୍ଦକା ରାଜାର ନନ୍ଦିନୀ !
ବ୍ୟର୍ଥ ପୂଜାରିଣୀ !
ତୁମେ କି ଜାଣିଚ ନଜେ କେବେ ତୁମେ ଯାଇଅଛ ମରି
ତୁମ ସାଥେ ମରିଅଛି ଅଚକିତେ ଶତାବ୍ଦୀ ତୁମର ! !

•

ଏକଦା ଯା ଥିଲା ସତ୍ୟ, ଆଜି ମନେ
ଆଣଇ ସଂଶୟ
ଶତ ପ୍ରଶ୍ନ ତୋଳେ ମଥା, ମନେ ହୁଏ
ଅସ୍ତ ନା ଉଦୟ
କେଉଁଟା ପରମ ସତ୍ୟ ? ଆଗନ୍ତୁକ ନବାଗତ ଜନ
ଅଟିତେ ପାରେନା ବୁଝି,
ବିଦ୍ରୋହର ଧ୍ୱଜା ତୋଳେ ମନ
ଯା ଆସିଚ ଅନାଗତ କହେ ତାର
ବିପରୀତ କଥା
ପ୍ରତିବାଦ କରେ ଆଜି
ଗତକାଲି ଦେଲା ଯେ ବାରତା ।
ମନେହୁଏ ପ୍ରେମ ବଡ଼
ପୁଣି ଲାଗେ ପ୍ରେମ ଠାରୁ ବଡ଼
ଜୀବନର ଏଇ ଗତି
ଧାବମାନ ଅବିଶ୍ରାନ୍ତ ଝଡ଼
ବିରାମ ବିହୀନ ।

ନୁହେଁ ଶ୍ରାନ୍ତ, ଅଗ୍ରଗାମୀ, ଅତନ୍ଦ୍ର, ଅଚ୍ଛିନ୍ନ
ଦୁର୍ବଳ ମୁହୂର୍ତ୍ତେ ପୁଣି ମନେ ମନେ କରେ ବିଶ୍ଳେଷଣ
ବ୍ୟର୍ଥ କରିବାକୁ ତାହା ଜୀବନର ସବୁ ଆୟୋଜନ

ଅଛୁ କିଏ ତାର ଅଧିକାର ?
କ୍ଷଣିକ ସପନେ ଚୂରେ ବାସ୍ତବର କଠୋର ହୁଙ୍କାର ।
ଆଜି ଏଇ ସନ୍ଧ୍ୟାଗରେ
ଭାବେ ମୋର ଭାବମୁକ୍ତ ମନ
ଦୁନିଆରେ କେତେ କିଏ ଗୃହେଁ
ମାନି ପାଏ କେତେ ଜଣ ?
ଆଜି ଏ ଶୀତର ସନ୍ଧ୍ୟା ବନ୍ଧୁ ଆଣେ
କେତେ ଦୀର୍ଘଶ୍ୱାସ
ତୃଷ୍ଣି ସ୍ୱପନର ଫେନ ଫାଙ୍କେ ଫାଙ୍କେ
ଲଭେ ତା ପ୍ରକାଶ ।
ବିଷାକ୍ତ ସର୍ପର ସମ କେବେ କ୍ଷୁଧା
କେତେ ହାହାକାର
ଏ ରାତ୍ରିର ବେଳକୂଳେ ଶୋଭାଯାନ୍ତ୍ରା
ରଚେ ବାରମ୍ବାର ।
କେତେ ପ୍ରତୀକ୍ଷାର ଲଗ୍ନ ଏ ମୁହୂର୍ତ୍ତେ
ନ ହୁଏ ବା ବ୍ୟର୍ଥ ?

କେତେ କେ ମାରବେ ଗୃହେଁ
ଜଗତ କି ବୁଝେ ତାର ଅର୍ଥ ?
ବ୍ୟର୍ଥ ଶତ ମାଟିର ସପନ
ଜୀବନର ବ୍ୟଙ୍ଗ ସମ ମରଣରେ
କରେ ନିମନ୍ତ୍ରଣ
ତେଣୁ କହେ ସଜାର ଦୁହିତା !
ତୁମେ ଉପେକ୍ଷିତା,
ପାଇବାର ଅର୍ଥ ତୁମେ ଖୋଜିଅଛ କିନ୍ତୁ ପାଇନାହଁ,
ଦେହ ଦୀପେ ଜାଳିଅଛ ଶିଖା ନୁହେଁ, ଅତି ଭୟାବହ
ମରଣର ଘନ କୃଷ୍ଣ ଚିତା
ହେ ପ୍ରେମିକା, ଚିର ନିବେଦିତା !
ତେଣୁ ତମ ପ୍ରଦୀପର ପାଶେ
ମରଣର କୃଷ୍ଣଛାୟା ବିଦ୍ରୂପରେ ନାଚେ ଉପହାସେ ।

ଜୀବନର ସିଂହଦ୍ୱାରୁ ଦୂତ ତବ
ଆସିଅଛୁ ଫେର
ଆଣିନ ସମ୍ବାଦ କିଛୁ ଯାହା ପାଇଁ
ଥିଲି କାନ ଡେରି ।
ସେଥିପାଇଁ ଅଭିମାନ ଜୀବନରେ
ଦେଇଚ କି ବଳି
ଆଲୋକ ପାରିନ ନେଇ, ଦୀପଶିଖା
ଯାଇଅଛି ଜାଳି ।

ତୁମର ସେ ପ୍ରେମଠାରୁ ତୁମେ ବଡ଼
ତେଣୁ ସାଧେ ତାର,
ତୁମର ହୋଇନି ମୃତ୍ୟୁ, ତୁମକୁ ଯେ
କରେ ଆବିଷ୍କାର ।

ନିଖିଳର ଅଶ୍ରୁ କଣା
ପ୍ରଭାତର ଲକ୍ଷ ସୁପ୍ତଚର
ପଳାତକ ରଜନୀରେ
ଖୋଜିଆଣେ ଯଥା ପ୍ରତିଥର ।

ତୁମେ ସେଇପରି.........
ଅସମାପ୍ତ ହେ କବିତା, ଆଗୋ ପ୍ରିୟେ !
ମରି ମଧ୍ୟ ପାରି ନାହିଁ ମରି !
ନାହିଁ ଅପେକ୍ଷା ତବ
ଚନ୍ଦ୍ରମ୍ଲାନ ବନଫୁଲ ପରି
ମୁହୂର୍ତ୍ତିର ପରିଜନ୍ମେ
ନିଜ ସ୍ୱର୍ଣ୍ଣ ଗନ୍ଧ ସିନା ଝରି
ପାରିଲନି ବାନ୍ଧି ତାହା
ନିଜ ମୂଲ୍ୟେ
ବାନ୍ଧିଥାଏ ଛନ୍ଦ;
ବାନ୍ଧି ଅଛୁ ଆନ ଚକ୍ଷେ
ସୃଷ୍ଟି କରି
ଲୋତକର ନଦୀ ।

ଆନର କରୁଣା ପରେ ଭିନ୍ନସମ
ଗଢ଼ ପାନ୍ଥାବାସ
ନିଜକୁ ପାରିଛୁ ରଖି, ହସ୍ତୀ ତବ
କରୁଣାର ଦାସ,
ତେଣୁ କହେ ରାଜାର ନନ୍ଦିନୀ !
ହେ ଅଭିମାନିନି !
ଜୀବନର ପ୍ରତିଶୋଧ ନେଇଥାଅ ଯଦି ଏଇପରି
ବାସ୍ତବ କି କ୍ଷମା ଦେବ ? କୋଟି ନେତ୍ରୁ ଅଶ୍ରୁ ପଡ଼ୁଥିର
ମୂଲ୍ୟ ତାର ରହିବ ଅଦେୟ
ଯାହା ପଥେ ପରମ ପାଥେୟ
ପାରିନ ସଂଗ୍ରହ କରି
ଅସହାୟେ କରିତ ନିର୍ଭର
ଅପରର ଦୟାପରେ
କେତେଦିନ ରହିବ ଅମର
ହୋଇ ପାରିଥାନ୍ତି ଯାହା;
ତୁମେ ତାହା ପାରିନାହିଁ ହୋଇ
ଏ ରାଜିର ଏ ପକ୍ଷ ତଳେ
ସେଇ ଦୁଃଖେ କାନ୍ଦେ କହିଁ କହିଁ
ତୁମ ଜନ୍ମ ଉତ୍ସବରେ ଚିରଦିନ
କା ଅସମାପିକା
ରାଜକେମା ହେ ନାରୀ ନନ୍ଦିକା ! !

———

# ଅଂଶୁପାରେ ସୂର୍ଯ୍ୟୋଦୟ

ଅଧ୍ୟାପକ ଜୟକୃଷ୍ଣ ମିଶ୍ର, ଏମ୍. ଏ, ଡ. ଇଡ୍.

---

ଅଂଶୁପା ! ତୋ ନୀରେ    ପଡ଼ିଗଲେ ଖର,
ଯାର ବଂଶ କୁଞ୍ଜେ    ଡାକେ ବଂଶଧର ।

କଳରବେ ତହୁଁ    କହେ କଳହଂସ—
ନିଜ ବଂଶେ ଆହା    ନ ହୁଅ ନୃଶଂସ ।

କାହିଁ ଖୁହିଁଅଛୁ    ମୀନକୁ ଯମୁନା
ଏକ ଲକ୍ଷେ, ନର    ସେହି ତୋ ନମୁନା ।

କାହିଁ ପୁଣି ଭେକ    ଟେକୁ ଟେକୁ ବେକ,
ବକ ଆସି ଚଳୁ    ମାଗିନିଏ ଦେଖ ।

କାହିଁ ବା ପ୍ରେମରେ    ଚକୁଆ ଚକୋଇ,
ବେଳେ ବେଳେ ତୋର    ଜଳେ ପକ୍ଷ ଧୋଇ ।

ମଧୁର ତୋ ତାନେ    ସମୀର ହିଲ୍ଲୋଳେ,
ସଙ୍ଗୀତ ମିଳାଇ    ଉଡ଼ୁଛନ୍ତି ଖେଳେ ।

କାହିଁ ପୁଣି କୂଳେ    କୂଳେ କାଣ୍ଠି ବଗ,
ଡେଙ୍ଗା ଗୋଡ଼େ ଚାହିଁ    ଘୂଲେ ଡଗ ଡଗ ।

ଅନାଏ ଜଳକୁ    ଜଳ ଜଳ କରି,
ଜଳଚର ଦେଖି    ଲୁଚିଯାଏ ଡରି ।

କାହିଁ ଶଙ୍ଖଚିଲ    ଝାଡ଼ିଦେଇ ପର,
ଚକ ଦେଇ ବୁଲେ    ତୋ ଜଳ ଉପର ।

କାହିଁ ମାଛରଙ୍କା    ମଥାକୁ ହଲାଇ,
ମାଛକୁ ଡାକଇ    ବନ୍ଧୁତା ଦେଖାଇ ।

"ତାଳେ ତାଳେ ନାଚି,"    କୂଳେ ବାଳି ଶୁଆ,
ଖାଇଲେ, ଧରଇ    ପାଳ ପାଣିକୁଆ ।

ପଙ୍କେ ପଡ଼ି ଗଡ଼ି     ଉଠି ପଡ଼େ କାହିଁ,
ଧୂସର ମହିଷ     ମଟ ମଟ ଚାହିଁ ।
କି ଅବା କର୍ଦ୍ଦମେ,     ମହିଷ ବରଚ,
ହସ୍ତ କରଦେଲ     ଜୀବନ ବରଞ୍ଚି ।
କାହିଁ ବା ମହିଷ     ବୁଡ଼ିଅଛି ଜଳେ,
ନାସାରନ୍ଧ୍ର ଖାଲି     ଦିଶଇ ଉପରେ ।
ଜଳ ଓକା ଏଣେ     ରତ ବକ୍ରପାନେ,
ତଥାପି ସେ ତାହା     ଶୁଣୁହୁଁ ନ ଜାଣେ ।
ନନ୍ଦନ ତୋ ତୀର     ଦେଖେ ଯେବେ କପି
ନକଟର ଗିରି     ବଳୁ ଅବତରି ।
ତୋ ଜଳେ ପଶିଣ     ପ୍ରେମେ କରେ ଖେଳା,
କମଳ କୂଳର     ବୁଡ଼ିଗଲା ଭେଳା ।

× × ×

କାହିଁ କେ ବସିଛି     ଧରିଣ ବଡ଼ଶୀ,
ଗୋଟି ଗୋଟି ମୀନ     ନଏ ଆକରଷି ।
କାଲ ଶେଷ ମୀନ     ଆପେ ଆପେ ଆସେ,
କାଲ ମୁଖ ଭବେ     ଏସନ ଗରସେ ।
ବେଢ଼ାଇଣ ଜାଲ     କାହିଁ କଉଶଳେ,
ପ୍ରବୀଣ ଧୀବର     ଜଳେ ମାଛ ଧରେ ।
ଭୁବନ-ମୋହନ     ମହାମାୟା ଜାଲେ,
ଏହି ଭଳି ନର     ପଡ଼ିଇଛି ପାଲେ ।
ସଙ୍ଗେ ସଙ୍ଗେ ମାଛ—     ମରିଗଲେ ସରି,
ଧୀବର ତାହାକୁ     ଘରେ ଘରେ ଧରି ।
ଧାବିତ କି ବେଗେ     କଣ୍ଟକ ହାଟକୁ,
ଡର ନାହିଁ ଖରି     ବନସ୍ତ ବାଟକୁ ।
ସରଳ ଶିଶୁଟି     କାହିଁ ପଦ୍ମବନେ,
ଗୁଲୁ ଗୁଲୁ ଗାଇ     କୁସୁମ-ଚୟନେ ।
କମଳ ସଙ୍ଗରେ     ହସଇ ରଙ୍ଗରେ,
ପରାଗ ରେଣୁ ତା     ପଡ଼ଇ ଅଙ୍ଗରେ ।

ଇକ୍ଷୁ କେଦାରକୁ      କାନ୍ଧି ଲୁଚି ବନ,
ତେଣ୍ଡା ସକେ ଦେଖ      ବୁହାଉଛୁ ଜଳ ।

ଚଉପାଶେ ଗୁର୍ମା      ଡାଳୁଅ ଧାନକୁ,
କି ସୁନ୍ଦର ଶିଖ      ଦେଇଛୁ ସ୍ଥାନକୁ ।

ଫଳ ଉପବନ      କେତେ ପଲ୍ଲୀ ପାଶେ,
ଝାଳ ଦେଖି ଦେଲେ      ପେଟ ପୂରିଆସେ ।

ଦୂର ଦୂରାନ୍ତକୁ      କେତେ ଶାଳବନ,
ଲମ୍ବିଅଛୁ କଳି      ନ ପାରେ ନୟନ ।

ତୋଟା କେତେ ଭରି      ପନସ ରସାଳେ,
ଯାଇଛନ୍ତି ମିଶି      ଦୂର ଚକ୍ରବାଳେ ।

ଗୋଟା ଗୋଟାଏ ଯେ      ଲମ୍ଭିଛୁ ଶିଖରୀ,
ଦିଶୁଅଛୁ ଦୂରୁ      ଶ୍ୟାମ ତମ୍ବୁ ପରି ।

ଜବଡ଼େ ଘେରିଛୁ      ତାକୁ ତରୁଲତା,
ଶୁଣିଛ କି ତହିଁ      ପ୍ରକୃତି ବାରତା ।

ପ୍ରକୃତି ପୂଜକ      ପାଇଁ ଏ ରଚିତ,
ସ୍ୱଜନେ ଯହିଁ ସେ      ହୋଇ ଏକଚିତ୍ତ,

ଶୋଭା ରସେ କରେ      ହୃଦ ଭରି ପାନ,
ସୁଷମାରେ ପାଏ      ପରମ ପରାଣ ।

ଇଚ୍ଛା ଯଦି ବୁଡ଼ି      ଯାଇ ସେ ଅମୃତରେ,
ବସ ଆସ ଥରେ      ସ୍ୱଜନେ-ଅମୃତରେ ।

*      *      *

---

# ପନ୍ଦର ଦେଖନ ବନ୍ଦନ !

ଶ୍ରୀ ବୈକୁଣ୍ଠନାଥ ଦାସ, ବି. ଏ.

—୧—

(ଆଜି) ଉଠିଅଛୁ ଅମ୍ବରେ ସୁନ୍ଦର ସବିତା,
ପନ୍ଦର, ଗାଅ ତବ କବିତା,
ମୁକତିର ଉଦୟରେ ସୁରଭିତ ଅନ୍ତର
ଗନ୍ଧ-ଆକୁଳ ଦିଗ-ବନିତା,
(ଆଜି) ଓଠେ ଓଠେ ଫୁଟି ଉଠେ ହସ ହେ
ଦେହେ ମନେ ହସେ ରୂପ ରସ ହେ
ବନ୍ଦିନୀ ମାଆ ମୋର ତ୍ରିଭୁବନ ବନ୍ଦ୍ୟା
ମୁକତି-ଶକତି ପରିଶୋଭିତା ।

—୨—

(ଆଜି) ନନ୍ଦନ ବନ ତରୁ ଆସ ସୁର ସୁନ୍ଦର
ପନ୍ଦର, ଗାଅ ତବ ଭାରତୀ
ମୃଣ୍ମୟ ଜୀବନର ସ୍ୱର୍ଣ୍ଣ-ସ୍ୱପନ-ଦୀପ
ଚରଣେ ଅରପୁ ଶତ ଆରତି,
(ଆଜି) ଅନ୍ନହୀନର ମୁଖେ ଦେଖ ହେ
ନବାନ୍ନର ସଙ୍କେତ ରେଖ ହେ
ନଗ୍ନ ମେଖଳେ ଆଜି ପୀତବାସ ଦିଏ ସାଜି
ଏ ମହାଜାତିର ମହା ସାରଥି ।

—୩—

ଜଳି ଜଳି ଯାଉଥିଲା ଜୀବନର ଦୀପାବଳି
ସରି ସରି ସରିଯାଏ ସଳିତା,
ତଇଲ ଦେଲା କେ ଭରି ତଇଲ ନେଲା ହେ ହରି
ଉଜ୍ଜ୍ୱଳେ ଉଠିଲାରେ ଜଳି ତା ।

(ଆଜ) କୁଜ୍‌ଝଟି-ଗୁଣ୍ଠ ଯାଏ ପାଣ୍ଡୁ ହେ
କଳ୍ପଳପାଣ୍ଡ ଉଠେ ଗାଇ ହେ
କୋକନଦ-କହ୍ଲାରେ ଅପରୂପ ମହ୍ଲାର
ଗୁଞ୍ଜନଶୀଳ-ଅଳି-ଭଣିତା ।

—୪—

ଉପର ଏ ମାଟି ପରେ      ଦୋସର ଜାହ୍ନବୀ ଝରେ
ବାଧେ ନାହିଁ କବା ସ୍ନାନ-ବରଷା,
ପରସାଦେ ହସି ଉଠେ      'ପନ୍ଦର' ଆଜ ତବ
ଏ ଧରଣୀ ତର ଶ୍ୟାମ ସରସା ।
(ଆଜ) କଙ୍କାଳ-ବୁକେ ହୁଏ ବୃଷ୍ଟି
ରୂପ ରସ ଗନ୍ଧର ସୃଷ୍ଟି
କାର୍ତ୍ତିକ-ପ୍ରସବନୀ-କାନ୍ତି ଝଲସି ଉଠେ
ଲଭି ତବ ଅଭିନବ ଭରସା ।

—୫—

(ରଜ) ଗଗନେ ପବନେ ଖେଳେ ଅପରୂପ ପତାକା
କୋଟି ଆଖି ଅଞ୍ଜନ-ଶଳାକା
କୋଟି ତଳା ବଢ଼ଦର କଳା ବକ ବକ ବୁକେ
ଖସିଯାଏ କବା ଧଳା ବଳାକା;
କୋଟି ଜୀବନର ଜୀବ-ଧନ କ,
କୋଟି ମହାମାନବର ମନ କ
ବଞ୍ଚିତ ଜୀବନର ସଞ୍ଚିତ ଲକ୍ଷ ଲକ୍ଷ—
ପ୍ରତୀକ କ ଏହି ମହାପତାକା ।
(ଆଜ) କୋଟି ଜନ ପାଳନକର୍ତ୍ତ୍ରୀ ଏ ପତାକା
କୋଟି ମହାମାନବର ଧାତ୍ରୀ
ସଂଗ୍ରାମ ପଥେ ପଥେ ତାର ଶୁଭ କଲ୍ୟାଣ
ଯୁଗେ ଯୁଗେ ଯାଚେ ଜୟ-ଯାତ୍ରୀ;
(ଆଜ) ତା' ଚରଣେ ଦଅ ମଥା ପାତ ହେ
ତା ଲଗି ପତାଇ ଦଅ ଗ୍ରୀବ ହେ
ପନ୍ଦର, ଘେନ ନବ ଅଭିନନ୍ଦନ
ପାହୁଅଛୁ ପାହୁଅଛୁ ରାତି ।

———

# ବଶିଷ୍ଠ ଓ ବିଶ୍ୱାମିତ୍ର

ଶ୍ରୀ ଅନନ୍ତ ପଟ୍ଟନାୟକ, ବି. ଏ.

---

ଶ୍ରାବଣର ବର୍ଷା ପଡ଼େ ଝରି
        ଆଶ୍ରମର ତରୁ ତୃଣ ପରେ,
ଇଙ୍ଗୁଦୀର ହଟେ ଅରି
        ଦେବର୍ଷିର ରମିତ ଘରେ ।

ମୃଦୁ ହସେ ପୁଚ୍ଛିଲେ ଆସି
        ଋଷିପତ୍ନୀ ସତୀ ଅରୁନ୍ଧତୀ
"ରନ୍ଧନ ଯେ କରିବ କିପରି
        ଲବଣ ତ ନାହିଁ ମହାମତି ?"

ଉତ୍ତରିଲେ ଦେବର୍ଷି ବଶିଷ୍ଠ
        ପ୍ରଶାନ୍ତିର ମଧୁମୟ ସ୍ୱରେ
"ମାଗିଆଣ କିଞ୍ଚିତ ଲବଣ
        ପାଶେ ଯାଇ ବିଶ୍ୱାମିତ୍ର ଘରେ ।"

କ୍ଷୋଭେ ଦେବୀ ସ୍ଫୁରିତ ଅଧରେ
        ଜଣାଇଲେ, "କାହିଁ ଯିବି କାହିଁ ?
ଗୋଟି ଗୋଟି ପୁତ୍ରଗଣ
        ହତ୍ୟା କଲା ଯେଉଁ ଆତତାୟୀ !

ଜନନୀ ମୁଁ ପୁତ୍ର ଶୋକାତୁରା
        ତା' ଆଶ୍ରମେ ଯିବି କେଉଁପରି ?
ଅଦ୍ଭୁତ ଏ ଆଦେଶ ଦେବର୍ଷି,
        ଭାଗ୍ୟର ଏ ଉପହାସ ପରି ।"

"ଖ୍ରୀଷ୍ଟୀୟର ଏ ନୁହେଁ ଉପହାସ
ତାର ଧର୍ମେ କଲ୍ୟାଣ ମୁଁ ଖୋଜେ,
ମୋ ଆଖିରେ ନୁହେଁ ଆତତାୟୀ
ଭଲ ପାଏ, ତାଙ୍କୁ ଭଲ ପାଏ ।"

"ଭଲ ପାଅ, ଭଲ ପାଅ ଯଦି
ଡାକୁଥିଲେ 'ଦେବର୍ଷି' ତାହାରେ
ଜୀବନ ଏ ରକ୍ତେ ଅରୁଣିତ
ନୋହିଥାନ୍ତା ଆର୍ତ୍ତ ହାହାକାରେ ।"

"ଦେବର୍ଷି ମୁଁ ଡାକ ନାହିଁ ତାକୁ
ପ୍ରାଣେ ପ୍ରାଣେ ଭଲପାଏଁ ବୋଲି ।"
ଜଣାଇଲେ ସଧୀରେ ବଶିଷ୍ଠ
ଶୁଭ୍ର ଚନ୍ଦ୍ର ସ୍ମିତ ରେଖା ତୋଳି ।

"ଭଲ ପାଏଁ, ଭଲ ପାଏଁ ଯେଣୁ"
ଦେବର୍ଷିର ମୁଖେ ଥାଉଁ ବାଣୀ,
ବାତ୍ୟା ହତ ଶାଳବୃକ୍ଷ କାହୁଁ
ପଦପ୍ରାନ୍ତେ ପିଟିଦେଲା ଆଣି ।

ଅରୁନ୍ଧତୀ ପଡ଼ିଲେ ଚମକି
ନୀଡ଼େ ପକ୍ଷୀ ଉଠିଲେ ଚିତ୍କାରି,
ଇଙ୍ଗୁଦୀର ତୈଳଦୀପ ଶିଖା
ଅନ୍ଧକାର ନାଶିଲା ଫୁତ୍କାରି ।

କାହୁଁ ଏକ କୃତାନ୍ତ କୃପାଣ
ଲୋଟିଗଲା କୁଟୀର ଚତ୍ୱରେ,
ସ୍ପର୍ଶ କରି ଦେବର୍ଷିର ପଦ
ବିଶ୍ୱାମିତ୍ର ଅଶ୍ରୁ ଉଦ୍ଗାରିଲେ ।

ନର୍ଝରର ରୁଦ୍ଧ ସ୍ରୋତ ସମ
ଜଣାଇଲେ ଆବେଗ ଉଚ୍ଛ୍ୱାସ,
"କ୍ଷମା କର, କ୍ଷମା କର ମୋତେ
ନାଶ ମୋର ପାଶବ-ପ୍ରୟାସ ।

ଭଲ ପାଅ, ଭଲ ପାଅ ତୁମେ
ଭଲ ପାଅ ପୁଣ ତନ୍ତୁ ବଳି,
ନୂହଁ ତ ଏ ରକ୍ତ ପରିହାସ
ଝିଙ୍ଗାସି ତ କହୁନାହଁ ଛଳି ?

ଶାଣିତ ଏ କରବାଳ କରେ
ଜାଣି ମୁଁ ଯେ ଆସିଥିଲି ଆଜ,
ଛିନ୍ନ କରି ମସ୍ତକ ତୁମର
ରଖିବାକୁ ଜୀବନର ବାଜି ।"

ବିଶ୍ୱାମିତ୍ର ତୋଳି ଭୂମିତଳୁ
ସତେ ଅବା ଅମୃତ ବରଷି,
ସ୍ନେହଭରେ କହିଲେ ବଶିଷ୍ଠ,
"ଉଠ ଏବେ ଉଠ ହେ ଦେବର୍ଷି ।"

ଅରୁନ୍ଧତୀ ନେତ୍ରୁ ଅଜାଣତେ
ଶ୍ରାବଣର ବର୍ଷା ଗଲା ଝରି,
"ମହାପ୍ରାଣ ଦେବତାରେ ଭଲ
ଜାଣିଥାନ୍ତୁ ମୁହିଁ କେଉଁପରି ?"

——————

# ସତ୍ୟ ଓ ଶକ୍ତି

ଶ୍ରୀ ରାଧାମୋହନ ଗଡ଼ନାୟକ

"କୁହ ତେବେ କ ଅଛୁ ଏ କଳସ ଭିତରେ",
ଉତ୍କଳର ଗଜପତି ପଚାରିଲେ ଉଗ୍ର କ ଅନ୍ତରେ,
"ହେ ଶ୍ରମଣ, ହେ ବ୍ରାହ୍ମଣ,
ଏଇ ଆମ ମୀମାଂସାର ମର୍ମ
ସତ୍ୟ ହେବ ଯାର କଥା, ତାର ଜୟ
ଧର୍ମ ତାର ହେବ ରାଜଧର୍ମ ।"

ଶ୍ରମଣ କହିଲେ, "ସର୍ପ"
ବ୍ରାହ୍ମଣ କହିଲେ, "ଭସ୍ମ"
ମୁହୂର୍ତ୍ତକ ପରେ.........
କଳସଟି ଖୋଲାହେଲା ଉଦେଲ ସେ ଜନତା ଆଗରେ ।
ଭସ୍ମ
ଭସ୍ମ ମୁଠାଟିଏ
ଦେଖିଲେ ସକଳେ ।
ବ୍ରାହ୍ମଣର ଜୟ ହେଲା
ଶୁଣାଇଲେ ଉତ୍କଳର ରାଜା,
ସଦର୍ପେ ଉଠିଲା ବାଜା
ବ୍ରାହ୍ମଣର ଜୟ ଜୟ ବାଜା ।

ମ୍ରିୟମାଣ ବୌଦ୍ଧଭିକ୍ଷୁ ବୋଇଲେ, "ରାଜନ,
ବ୍ରାହ୍ମଣ ତ ହେଲେ ଏବେ ଜୟର ଭାଜନ,
ନିଖିଳ ଏ ଜନତାର ଆଗେ,
ମାତ୍ର ଏବେ ହୃଦୟେ ଯେ ଜାଗେ
ଛୋଟିଏ ଆମର ପ୍ରଶ୍ନ
ଦେଇବ କି ବାରେ ?
ଖୋଲିକରି କହିବ କି ତୁମର ଏ ଧର୍ମ ଦରବାରେ ?

କି ଥିଲା ସେ କଳସରେ,
ସର୍ପ ଅବା ଭସ୍ମ ?
ତୁମେ ଏକା ଜାଣ ତାହା ସକଳ ପ୍ରକାରେ ।
ସତ୍ୟର ପୂଜାରୀ ଆମେ ପରାଜିତ
ଆମେ ନିରୁପାୟ
ସେଇ ସତ୍ୟ ନେଇ ଏବେ
ଘେନବୁ ବିଦାୟ ।"

ନୃପତି ଉତ୍ତର ଦେଲେ ଗ୍ରୀଷ୍ମା-ଘନ ସ୍ୱରେ,
"ଯାହା ଏବେ ଦେଖା ହେଲା
ତାଇ ଥିଲା କଳସ ଭିତରେ ।"

ବୌଦ୍ଧ ଭିକ୍ଷୁ ଦୁଇଜଣ
ପୃଷ୍ଠ ଭଙ୍ଗ ଦେଇ
ସଭା ଗୃହୁ ଚାଲିଗଲେ
"ଦେଖ ଦେଖ ଏଇ ।"

ବିଜୟୀର ଯାତ୍ରା ଯେନ ଉତ୍‌ଫୁଲ୍ଲ ଲଲାଟେ
ଦରବାର କମ୍ପାଇଲେ ସ୍ତୁତି ମନ୍ତ୍ର ପାଠେ
ବିପ୍ରଗଣ ।
ଗଜପତି ଶୁଣାଇଲେ,
"ଅଜେୟ ବ୍ରାହ୍ମଣ,
ସର୍ପ ରଖାହୋଇଥିଲା କଳସ ଭିତରେ
ଭସ୍ମ ତାହା ହେଲା କେଉଁପରି ?
ବିସ୍ମିତ ଲାଗୁଛି ମୋତେ
ସନ୍ଦେହ ମୋ ଦିଅ ଦୂର କରି ।"
ଅଦ୍ଭୁତ ମିଳିତ କଣ୍ଠ ଉଠିଲା ଝଙ୍କାରି;
"ମନ୍ତ୍ରଶକ୍ତି
ମନ୍ତ୍ରେଶକ୍ତି ବଳେ ରାଜା,
ବ୍ରାହ୍ମଣ ଯେ ବ୍ରହ୍ମତେଜଧାରୀ"
ସଭାସ୍ଥେ ବୋଇଲେ ରାଜା
"ଶ୍ଲାଘ୍ୟ ଆଜି ତୁମର ଏ ଜୟ,
ଶକ୍ତିର ଏ ଧର୍ମେ ମୋର ରାଜଧର୍ମ
ଦୁର୍ମଦ ଦୁର୍ଜୟ ।"

---

# ନମସ୍କାର କର

ଶ୍ରୀ ମନମୋହନ ମିଶ୍ର, ବି. ଏ.

ତୁମକୁ ମୁଁ ପୁରସ୍କାର ଦେଲି
ଆହେ ବିଶ୍ୱରବି
ମୋର ଏ କବିତା,
ସଂସାରରେ କବି ବୋଲନ୍ତି ବୋଲି ଯାହାଙ୍କୁ
ସେ କବି ମୁଁ ନୁହେଁ,
ମୋହର କଳ୍ପନା-ସୀତା
ଜନ୍ମିଥିଲା ଏ ମାଟିର କଠୋର ଜଠରୁ
ଦୂରନ୍ତ ଜୀବନ-ପଥେ ଘନ ବନାନୀରେ
ରକ୍ତପୁଷ୍ପ ଶ୍ୟାମ କୋଳାହଳେ
ଜଟାଧାରୀ ବନବାସୀ ସନ୍ନ୍ୟାସୀର ପାଣି
ବରିଥିଲା ଆପେ ଜାଣି ଜାଣି
ସତ୍ୟ ଆଉ ପ୍ରେମ ଲାଗି ବାର ବାର
ଦେଇଥିଲା ଅନଳ ଶପଥ;
ଆଜଠାରୁ ବର୍ଷ ଏକଶତ,
ଯେ ଦିନ ନ ଥିଲା ନେତା, ନ ଥିଲା ଗୁରୁଣି
ସେଦିନ ମୁଁ ତାରେ ଜନ୍ମ ଦେଲି
ଶତ ଶତ ମାତାର କ୍ରନ୍ଦନେ
ହିମାଳୟ ଶିଖଣ୍ଡି ବିଦାରି ତାରେ ବୁହାଇଲି
ଲକ୍ଷ୍ମୀବାଈ ଅସିର ଝଳସେ
ଗଢ଼ିଥିଲି ତାହାର ଲପନେ
ସଜଫୁଟା କେତେ ନୀଳକଇଁ
ହୃଦୟର ହରିଶ୍ଚନ୍ଦ୍ର ଚିର
ଗଢ଼ି ଥିଲି ତାର କଟିବାସ,
ଅଦ୍ଭୁତ କୃଷି ବଳର ପେଷିଲ ଧମନୀ
ଗୁନ୍ଥି ଥିଲି ବେଣୀ

ଗଢ଼ୁଥିଲି ବନ୍ଧନ-ଦାଉଡ଼ି
ସେ ଦାଉଡ଼ି କରିଲି ମନ୍ଥଣ
ପ୍ରଥମ ପ୍ରେମିକା ମୁଖ ମଧୁର ସିଞ୍ଚନେ ।

ଆଜି ମୋତେ
ଶୁଝିବାକୁ ହେବ
ଯାହାଠାରୁ ଯାହା ନେଇଥିଲି ।

ଦଶୋଟି ବରଷେ,
ଶହେବର୍ଷ ତଳର ଏ ଋଣ
ବଢ଼ି ବଢ଼ି ଯେ ହେଲା ଦୁର୍ବହ !
ଭାଙ୍ଗିବାକୁ ହେବ ମୋତେ
ଅଶୋକ ବନର ଶ୍ୟାମ ରାକ୍ଷସ ପ୍ରାଚୀର,
ଯୋଡ଼ିବାକୁ ହେବ
ମୁଗ୍ଧ ପ୍ରଣୟୀ ବୁକେ
ପ୍ରେମିକାର ମୁଦ୍ରିତ ନୟନ
ଗଢ଼ିବାକୁ ହେବ ମୋତେ ଅର୍ବୁଦ ଧମନୀ
କୋଟି କୋଟି ବାହୁ
ଚତ୍ୱରରେ ମାନବ ସ୍ୱାକ୍ଷର
ଜୀବନର ଦୃଢ଼ ଇସ୍ତାହାର
ମୋତେ ଆଜି ଲେଖିବାକୁ ହେବ ।

ମୋତେ ଆଜି ଲେଖିବାକୁ ହେବ
ତଟିନୀ ତରଙ୍ଗେ
ପ୍ରଭଞ୍ଜନେ ସୁସଂଯତ
ଲଙ୍କାର ଲାଞ୍ଛନ
ଗାନ୍ଧ-ଦଗ୍ଧ ବନ୍ଧୁର ହୃଦୟ
ସମତଳ ବୁଣିବାକୁ ହେବ ଆଲୋକ ବନ୍ଧନ

ତୁମକୁ ମୁଁ ପୁରସ୍କାର ଦେଲି
ଆହେ ବର୍ବରକ,
ତୁମେ ହୁଅ କର୍କଶୁ କର୍କଶ
ରୂଢ଼ ରୂଢ଼ତର
ପୁରୁଣା ବନ୍ଦୋବସ୍ତର ଜସ୍ତିବ ଫେଂପାଡ଼
ଅମୃତସମ୍ଭବା ମୋର ମାଟିର ଦୁଲ୍ଲଳୀ
ମୋ କଳ୍ପନା-ସୀତା
ଜନନୀର ସ୍ତୁପାଶିତ ଯନ୍ତ୍ରଣା ବିକଳ
(ବାରେ ଆଜି ଦେଲି ପୁରସ୍କାର)
ନମସ୍କାର କର
ଆହେ ବର୍ବରକ ।
ତୁମକୁ ମୋର ଏ ଆଜ୍ଞା
ନମସ୍କାର କର ।

———

# ଖଦୀ

## ୬ ବୀରକିଶୋର ଦାସ

---

ଖଦୀ ତ ଦେଶର ପ୍ରାଣ ଦେବତା
ପାଇଛୁ ମୋ ଦେଶ ଖଦୀର ସନ୍ଦେଶ
ବୁଝିଛୁ ଖଦୀର ମରମ କଥା । ପଦ ।
ଖଦୀ ମୋର ଧନ ଖଦୀ ମୋର ଧ୍ୟାନ
ଖଦୀ ମୋର ଜ୍ଞାନ ଖଦୀଟି ବିଜ୍ଞାନ
ଖଦୀ ମୋର ବଳ ଖଦୀ କଉଶଳ
ଗଢ଼ି ଅଛୁ ଦେଶ ଜାତି ମମତା । ୧ ।

ହିନ୍ଦୁ ମୁସଲ୍ମାନ ଇସାଇ ଜଇନ
ବଉଦ୍ଧ ପାରସୀ ଶିଖ ଆଦି ଜନ
ସବୁରି ପରାଣେ ନବଭାବ ଆଣେ
ସୃଜଇ ମାନବ ପ୍ରୀତି ଏକତା । ୨ ।

ବିଶ୍ୱସେବା ବ୍ରତ ରାକ୍ଷୀ ବାନ୍ଧି ହାତେ
ଚଳିଛୁ ସେ ନିସ୍ୱ ମାନବଙ୍କ ସାଥେ
ମରି ନାହିଁ କେବେ ମରିବ ନାହିଁ ସେ
ଅଗ୍ନି ପରୀକ୍ଷାରେ ତୋଳିଛୁ ମଥା । ୩ ।

କାଳ କଳମୁଖେ ତୁଟାଇ ବିବାଦ
ବରି ଆଣିବାରେ ବିଶ୍ୱ ସାମ୍ୟବାଦ
ଧରଣୀ ଉପରୁଁ କରିବ ବିଲୋପ
ଅକାଳ ମରଣ ଅଦିନ ହତ୍ୟା । ୪ ।

---

# କେହି ତ ବିରହୀ ଜନ ଏକାକୀ ନାହିଁ *

୰ ବିଚ୍ଛନ୍ଦଚରଣ ପଟ୍ଟନାୟକ, ବି. ଏ. ବି. ଏଲ୍.

(ରାଗ—ଗୌଡ଼ି)

ଝରଣା ସରିତ କୋଳେ          ଚଳଇ ପୀରତି ଖେଳେ
ସରିତ ସାଗରେ ମିଳେ ନିବିଡ଼େ ଯାଇଁ,
ପବନେ ଲେହି ପବନ          ପ୍ରେମେ ଦିଏ ଆଲିଙ୍ଗନ
କେହି ତ ବିରହୀ ଜନ ଏକାକୀ ନାହିଁ;
ଏକ ସାଥେ ମିଳେ ଅପର
ତୋହ ମୋହ ମେଳ ନୁହେଁ କି ଦୋଷ ମୋର ?

ପ୍ରେମମଦେ ହୋଇ ଧୀର          ଅମ୍ବର ଚୁମ୍ବଇ ଗିରି
ଢେଉ ଉରେ ଦେଖ ଗୋରି ! ଚଳଇ ଢେଉ
ଶୋଭାବନ୍ତ ଫୁଲବାଳୀ          ଲେଉଟାଇ ଦେଲେ ଅଳି
ତା ଉପରେ ନୋହେ ଚଳି କହଇ କେହୁ
ଧରିକଣ୍ଠେ ଦେଖ ତପନ
ଦେଖାଇ କେସନ କର, ଚୁମ୍ବେ ଲପନ ।
ସାଗର ଉରସେ ଶଶୀ          ଚୁମ୍ବଇ ଦେଖ ସୁହାସୀ !
ହେଲେ ଏ ଚୁମ୍ବଇ ରାଶି କି ଲଭ ମୋର ?
ତୋ ଚୁମ୍ବନ-ସୁଧା ପାଇ          ହୋଇ ନିରନ୍ତର ବାଇ
ରହେ ଉପବାସୀ ହୋଇ ଏ ମୋ ଅଧର,
ଦଣଦଣ ପୀରତିମୟ
ହେଉ ନ ଟଳଇ ତଳେ ତୋହ ହୃଦୟ !

* ଇଂରେଜ କବି ସେଲିଙ୍କ କବିତାର ଛାୟାରେ ଲିଖିତ ।

# ଶିମୁଳି

ଅଧ୍ୟାପକ ବିନୋଦଚନ୍ଦ୍ର ନାୟକ

---

ଶୃଙ୍ଗ ଶୃଙ୍ଗ ରଚେ ଅଗ୍ନି ସ୍ନାନ
ତଳେ ଆମ୍ଳାନ ନଦୀ ପାଣ୍ଡୁର ସିକତା
ତୃଷାର୍ତ୍ତ ଜିହ୍ୱାର ସମ ଦୂର ଲମ୍ବମାନ ।
ବୈଶାଖର ନିର୍ଦ୍ଦୟ ମଧ୍ୟାହ୍ନ ।

ଉଲଗ୍ନ ଅନେକ ଶାଖା,
ଆକାଶର ଅକରୁଣ ନୀଳ,
ସୂର୍ଯ୍ୟାସ୍ନାନ ସାରେ ଶଙ୍ଖଚିଲ
ବହୁଦୂରେ ଘୁମାଇଛି ଶାନ୍ତ ଜନପଦ,
ଗୈରିକ ପଥର ତୃଷ୍ଣା ଦ୍ୱିଗୁଣିତ କରି
ଝିପିପଡ଼େ ମହୁଲର ମଦ ।
ସୃଜି ମରୀଚିକା
ନାଚେ ବୈଶାଖର ରକ୍ତଶିଖା !

ନୀଳପଟେ ଫିଙ୍ଗି ଦେଇ ତୂଳୀ
କେଉଁ ରଙ୍ଗ ଲେପି ଦେଲାପରି
ଏଠେ ଏକା ନିର୍ଜନ ଶିମୁଳୀ,
ପୁଷ୍ପେ ପୁଷ୍ପେ ସାଜ,
କିବା ରକ୍ତଲାଜ
ପିଙ୍ଗଳ ଜଟାର ଜାଳେ ରୁଦ୍ରାଗ୍ନି ବହ୍ନିର
ଅଛିଲସେ ଆତ୍ମଘାତୀ ସତୀର କି
ସୀମନ୍ତ ସିନ୍ଦୂର !
ଗୃହଆଡ଼େ ଶିଖା ତୋଳି ନାଚେ କିବା

ହିଂସ୍ର ଅପମାନ ! !
ବୈଶାଖର ଆଗ୍ନେୟ ମଧ୍ୟାହ୍ନ ! ! !
ଏ ମୋ ବୈଶାଖ ଆକାଶେ ଆସେନା ଉତ୍ସୁକ
ମେଘର ମେଦୁର ବନ୍ୟା ଗ୍ରୀଷ୍ମାର କୌତୁକ
ମମତା ବର୍ଷଣ କରଯାଏ ନାହିଁ………
ଖା'ଲି ହାହାକାର !
ସାମାନ୍ୟ ସବୁଜ ବି ତ ନାହିଁ କାହିଁ ଏ ମରୁମାୟାର
ବାୟୁ ତରଙ୍ଗ ଚଳେ ନେଇ ଯନ୍ତ୍ରଣାର କୁଙ୍କୁମିତ ଧୂଳି
ବିଷ ସୂର୍ଯ୍ୟ ଶରେ ଶରେ କଣ୍ଟକିତ
ମୁହିଁ ସେଇ ରକ୍ତାକ୍ତ ଶିମୁଳି ।
ଦିଅ ତେବେ ଦିଅ ମତେ
ନିଦାରୁଣ ଯନ୍ତ୍ରଣାର ଜର୍ଜରିତ ପ୍ରାଣ
ସ୍ନାୟୁରେ ସ୍ନାୟୁରେ ତୋଳ ପଞ୍ଚାଗ୍ନିର ଗାନ,
ଧ୍ୱଂସର ଦୂତିକା ସାଥେ ରଚ ସ୍ୱୟଂବର
ଆଣ କାଲ ବୈଶାଖୀର ଝଡ଼ ! !

———

# କବିର ବ୍ୟଥା

ଅଧ୍ୟାପକ ଚନ୍ଦ୍ରମଣି ବେହେରା

ଏକାନ୍ତ ଯା' ବ୍ୟକ୍ତିଗତ ଅଟେ ତାହା ପବିତ୍ର ସ୍ୱର୍ଗୀୟ
ହୋଇଥାଉ ସେ ପଛକେ ଇନ୍ଦ୍ରିୟର କୁତ୍ସିତ ବାସନା
କବିର ପ୍ରଶାନ୍ତ ଚକ୍ଷେ; ମହତ୍ତମ ହୋଇପାରେ ହେୟ
ତୁଚ୍ଛତମ ହୋଇପାରେ କବିପକ୍ଷେ ଅମୃତ ସାଧନା —

କରିବାକୁ ତା' ଆତ୍ମୀୟ; କବିର ଯେ ଏଇ ଦୁଃଖାନଳ
ଅହରହ ଜଳେ ପ୍ରାଣେ, ଭସ୍ମୀଭୂତ କରେ ତା'ର ଚିତ୍ତ
ଏକାଧାରେ ଦ୍ରାକ୍ଷାଫଳ ବିକଯନ୍ତ, ଶୁଣି ନିଶାଖୋର
କବି ଅଟେ ଚିରକାଳ, ସେ ଏକାଠି ପିଏ ବିଷାମୃତ ।

ଦୁଷ୍ଟ ଗ୍ରହ ଅଧିବାସୀ କେ ନିର୍ମମ ଶୟତାନ ଯେବେ
କବି ଲୁହେ ହୋଇ ଖେଳ ପ୍ରାଣେ ଖୋଳେ ଦୁରାରୋଗ୍ୟ କ୍ଷତ
ସେ କ୍ଷତେ ଆତ୍ମୀୟ କରି ସୁଖିନର ଦେବଶକ୍ତି ତେବେ
ଫୁଟାଏ କବିର ହୃଦେ ଫାଲ୍‌ଗୁନର ଫୁଲ ପ୍ରଭୃତ ।

ଅନନ୍ତ ନର୍କେ ମୁଁ ସଢ଼େ, ହତ୍ୟା ପଛେ କରୁ ମୋତେ ବ୍ୟଥା
କବି ହୋଇ ରହେଁ ଗାଇବାକୁ ସ୍ୱର୍ଗ-ନର୍କ ସଂଗ୍ରାମର ଗାଥା ।

—※—

# ବାଲି ଚର

ପଣ୍ଡିତ ରାମକୃଷ୍ଣ ପାଢ଼ୀ, ବି. ଏ.

---

ନଦୀ-ହ୍ରଦ ଭେଦ ଉଠିଛି ଦୂରରେ ସୁବିଶାଳ ବାଲିଚର.
ଧୂସର ଧୂଳିର ଉଷର ବେଦନା ତା'ଶିରେ ନଚୁଏ ଖର ।
ଶ୍ୟାମ ତୃଣଦଳ ଦେଇ ନାହିଁ ତାକୁ କୋମଳ ଗୁଣ୍ଠର ସ୍ନେହ
ନିଜକୁ ନିଜେ ସେ ବାହୁନୁଛି ବସି ସଦା ଯାତାନରେ ବନ୍ଧ ଦେହ ।
ଚଉପାଶେ ତାର ଶ୍ରେଷ୍ଠ ଢେଉ କେତେ ନାଚବୁଲେ ଦବା ନଶି,
କେଜାଣି ତଥାପି ପ୍ରାଣ ଜଳେ ତାର କେଉଁ ବେଦନାରେ ମିଶି !
ଘେର ତାକୁ ଜଳ ହସୁଥାଏ ଖଳ,—କରଇ ଛଳନା ସୁଖେ,
ସୁଦୂର ଶ୍ୟାମଳ ପଡ଼ିଆକୁ ଚାହିଁ ଦେଖେ ସେ ବିରସ ମୁଖେ ।
ସୁନାର ଫସଲ ନଦୀ ତୀରେ ତାକୁ ହାତ ଟେକି ସଦା ଡାକେ,
ଡାକୁଥାଏ ସଦା କାଇଁଶ ପଣତ ଉଡ଼ି ଉଡ଼ି ବନମାନେ ।
ସୋରଷ ଫୁଲର ପୂଲି ମହଲର ଡାକେ ପୁଣି ରୂପବତୀ,
ଅଜଣା ପଥିକ ଡାକଇ ଆଜ ମୁଁ ଶୋକାତୁର ହୋଇ ଅତି—
ହାୟ ସଖି,—ତୋର ନ ହରିଲେ କେହି ଦାରୁଣ ମରୁର ତୃଷା !
ହଜାରେ ଫଣାର ଫେନିଳ ବିଷରେ ଦଗ୍ଧ ହେଉ ଚର କୃଶା ।
ବାଲିଚର—ବାଲିଚର !
ଚାହିଁ ତୋ' ଗୁଣ୍ଠରେ ମୋ ହୃଦ-ବେଦନା ବୋଲିବ ଆସିଛି ପର !
ଚାହାଁ ଚାହାଁ ବାରେ ଗୁଣ୍ଠ ଚରକୁ ମୋ', ବେଦନା-ତପନ ଦାହ—
ଦହିଲଣି କେତେ,—ପାଉନାହିଁ କାହିଁ ସୁଶୀତଳ ଅବଗାହ ।
ମୋତେ ଘେର ଆଜ ନାଚୁଅଛି ପୁଣି ଛଳନା ବିବିଧ ଛଳେ,
ତୋହପର ଖାଲି ବେଦନାର ବାଲି ବିରଳେ ହୃଦୟ ତଳେ ।
ବାଲିଚର—ବାଲିଚର !
ଚାହାଁ ତୋ ସାଥୀରେ ସାଥୀ ହେବ ବୋଲି ତେଣୁ ମୁଁ ଆସିଛି ପର !

---

# ଝାନ୍ସିରାଣୀ

## ଶ୍ରୀମତୀ ନିର୍ମଳା ଦେବୀ

ଝାନ୍ସି ଆମର          ଝାନ୍ସି ଆମର
ଝାନ୍ସି ନୁହଇ ଇଂରେଜର
ଜାଗରେ ଜାଗରେ          ଝାନ୍ସି-ବାହିନୀ
ବୀର ବିଦ୍ରୋହୀ ସୈନ୍ୟ ମୋର ।
ଦରିଆ ପାରର          ଲୁବ୍ଧ ବଣିକ
କୂଟ ଚକ୍ରରେ ଶାସକ ସାଜେ
ଜାଗରେ ଜାଗରେ          ବୈରି-ନାଶନ
ମୁକ୍ତିର ଏଇ ବିଷାଣ ବାଜେ ।
ପ୍ରତାପର ଦେଶ          ଶିବାଜୀର ଦେଶ
ଦୁର୍ଗାବତୀର ଜନ୍ମ-ଦେଶ
ଆମେ ଧରିବା କି          ଧରଣୀର ତଳେ
ପରାଧୀନତାର ନୃତ୍ୟବେଶ ।
ମୁକ୍ତି ଆମର          ବିଜୟ ଆମର
ଝାନ୍ସି ଆମର କାମ୍ୟ ଆଜି
ବୀର ବାଣୀ ଶୁଣି          ଶତ କଣ୍ଠରୁ
"ଝାନ୍ସିର ଜୟ" ଉଠିଲା ବାଜି ।
ନଙ୍ଗଳା ଅସି          ଊର୍ଦ୍ଧ୍ୱେ ଉଠାଇ
ଶୁଣାଇଲେ ଖରେ ଲକ୍ଷ୍ମୀବାଈ—
ଜୀବନ ଆଜିରେ          ଦେଶର ସକାଶେ
ମୃତ୍ୟୁ ଆଜିରେ ଦେଶର ପାଇଁ ।

( ୨ )

ଗୁଆଲିଅରରେ          ସଂଗ୍ରାମ ଆଜି
ଲାଗିଛି ଉନ୍ମୁକ୍ତ. ଉନ୍ମୂଳତର
ଏ ପାଖେ ଆମର          ସିପାହୀ ସଇନ
ସେପାଖେ ବିଲାତି ସଇନଦଳ ।

ଅଶ୍ୱ ବାହନେ ପୁରୁଷର ବେଶେ
ଯୁଦ୍ଧ ଚଳଇ ଲକ୍ଷ୍ମୀବାଈ
କପ୍ତାନ ରୋଜ ଫୌଜ ଚାଳକ
ଭାରତରେ ଗୋରା ଶାସନ ପାଇଁ ।
ଦିନର ଆକାଶ ଦିଗ ଦିଗନ୍ତ
ଧୂମ-ପଟଳେ ଅନ୍ଧକାର
ଗୁଡ଼ୁମ୍ ଗୁଡ଼ୁମ୍ କମାଣ ଫୁଟୁଛି
ମୃତ୍ୟୁ ହୋଇଛି ଦୁର୍ନିବାର ।
ଗୁଳି ବନ୍ଧୁକ ଆବାଜ ଭିତରେ
ଝଲସି ଉଠଇ ଦୃପ୍ତ ଅସି
ରୁଧିର ଝରଇ କେତେ କେତେ ମଥା
ମୃତ୍ୟୁ ଚରଣେ ପଡ଼ଇ ଖସି ।
ଘାତ ପ୍ରତିଘାତେ ଦୁଇ ଦଳ ତହିଁ
ଉଠୁଛି ତୁମୁଳ ଯୁଦ୍ଧଘଣ୍ଟା
କେ ହଟିଯାଉଛି କେ ମାଡ଼ିଚାଲିଛି
ପାରାବାରେ ଯଥା ଯୁଆର ଭଟ୍ଟା ।
ଲକ୍ଷ୍ମୀବାଈର ‘ପୃଷ୍ଠେ ପଲକେ
ନିଦାରୁଣ ଗୁଳି ବସିଲା ଆସି
ଅଶ୍ୱ ଉପରୁ ବୀରବାଳା ତହିଁ
ଅବନୀର ତଳେ ପଡ଼ିଲା ଝାସି ।
ପଲକ ଭିତରେ ଚେତା ପାଇ ରାଣୀ
ନୟନ ଫିଟାଇ କହିଲେ ଭାଷା—
"ମୁଁ ଏବେ ଯାଉଛି ହେ' ମୋ ସଇନ
ତଥାପି ମୋହର ରହିଛି ଆଶା ।
ତମେ ରେ ଢାଳିବ ଶତ୍ରୁର ରକତ
ଦେଶର ବିଜୟୀ-ପତାକା ବହି
ଝାନ୍ସି ହୋଇବ ତୁମର ଦେଶ ରେ
ତୁମେ ଚିରଦିନ ମୃତ୍ୟୁ-ଜୟୀ ।"
"ଝାନ୍ସିର ଜୟ ଝାନ୍ସିର ଜୟ"
ଶତ କଣ୍ଠରୁ ଉଠିଲା ବାଣୀ
ତୁମର ଆଶିଷେ ଶତ୍ରୁ ଜିଣିବୁ
ଜୟତୁ ଶହୀଦ ଝାନ୍ସିରାଣୀ !

---

# ଚୈତକ

ଶ୍ରୀ ଡମ୍ବରୁଧର ପରିଡ଼ା, ବି. ଏ., ଡି. ଇଡ଼

ହେ ଚୈତକ, ଶାପଭ୍ରଷ୍ଟ ଦେବତା କି ତୁମେ,
କି ପାପ ମୋହର ଦେଖି ଗଲ ସ୍ୱର୍ଗଧାମେ ?
ସୁଖେ ଦୁଃଖେ ଜୀବନର ଚିର ସହଚର,
ଏକାଧାରେ ଭାଇ, ବନ୍ଧୁ ସେବକ ମୋହର;
କି ଦେଇ ଶୁଝିବି ତବ ଋଣ ଅଶ୍ୱବର,
ପୂଜିବି କ୍ଲେଶକ୍ଳାନ୍ତ, କର୍ମଠପସ୍ୱର ?
ବିପଦ ଦୁର୍ଦ୍ଦିନେ ଯେବେ ଭାଇ, ବନ୍ଧୁ, ଜାତି
ହେଲେ ଯାଇ ଐଶ୍ୱର୍ଯ୍ୟର, ସମ୍ମାନର ସାଥି,
ତୁମ୍ଭେ କି ତେଜିଛ ଏଥି ଦରିଦ୍ର ପ୍ରଭୁରେ,
ରାଜପ୍ରାସାଦର ମୋହେ— ଏ ପର୍ଣ୍ଣ କୁଟୀରେ ?
ଶତ୍ରୁର ଆତଙ୍କୁ ମୋର ରକ୍ଷା ଲାଗି ପରା
ଭ୍ରମିଅଛ ପୃଷ୍ଠେ ମୋତେ ନେଇ ବର୍ଷସାରା,
କେବେ କଣ୍ଟକିତ ବନେ, ଦୁର୍ଗମ ଶିଖରେ,
କେବେ ଅବା ତମୋମୟ ପର୍ବତ କନ୍ଦରେ,
ପଥଶ୍ରମେ, ତନ୍ଦ୍ରାବଶେ ପଡ଼ିଲେହେଁ ଝୁଣ୍ଟି
ବିପଦର ଦାଢ଼ୁ ମୋତେ ରଖିଛ ସାଉଁଟି,
ଛିନ୍ନ, କ୍ଷତ ପଦମୂଳୁଁ ବହୁ ରକ୍ତ ଝର
ବୁଡ଼ାଇଛି ସିକତଳ, ଝିଙ୍କିଲ, ପ୍ରାନ୍ତର,
ପ୍ରଭୁଭକ୍ତ, ଦେଶପ୍ରୀତି, ଜାତି ମୈତ୍ରୀ ରକ୍ତେ
ସିକ୍ତ ବାଲୁକଣା ଗର୍ବେ ଲୁଟେ ଏ ସୈକତେ ।
କେବେ କି ହୋଇଛ କହୁଁ କର୍ତ୍ତବ୍ୟ ବିମୁଖ ?
ସାନ୍ତ୍ୱନା ଲାଗି ମୋ' ମନେ ମାର ମନଦୁଃଖ,
ଦିନବ୍ୟାପୀ ଉପବାସେ ପୁତ୍ର କନ୍ୟା ମୋର
ମର୍ମଭେଦୀ ଶୋକେ କଲେ କରୁଣ ଚିତ୍କାର,

ଅଶ୍ରୁ ଧାରେ ଢଳାଇଛୁ ତୁମେ ଗଣ୍ଡସ୍ଥଳ,
ଛାଡ଼ିଅଛୁ ଖେଦେ ମୁଖୁଁ ତୃଣର କବଳ,
ପଶୁ ପ୍ରାଣେ ଏତେ ସ୍ନେହ ଦେଖିଛୁ କେ କାହିଁ,
ପରଦୁଃଖେ କିଏ ଗଣ୍ଡ ଦେଇଛୁ ଢଳାଇ ?
ତେଣୁ ଭୁଲି ନ ପାରଇ ତୁମର ମମତା
ତେଣୁ ପୂଜେ ପଦ ତବ ସର୍ବଗ ଦେବତା ।

ଶେଷେ ଜୀବନର ଏହି ଘୁରୁ ଅଭିନୟେ
ହଳଦୀଘାଟର ଘୋର ଭୀଷଣ ପ୍ରଳୟେ
ସ୍ୱାର୍ଥ ଭୁଲି ଦେଲ ଯେଉଁ କଠୋର ପରୀକ୍ଷା
ଯୁଗେ ଯୁଗେ ତ୍ୟାଗବୀରେ କରିବେ ତା' ଦୀକ୍ଷା
ତା' ବଳେ ଲଭିବ ତୁମ୍ଭେ ଦେବତା ଅର୍ଚ୍ଚନା
ପଶୁ ପ୍ରାଣେ ମାନବର ଭକ୍ତି ଆରାଧନା ।
ସମର ସାଗରେ ଯେବେ ବିପକ୍ଷ ଅରାତି
ସାଗର ଲହରୀ ସମ ଆସୁଥିଲେ ମାତି
ବିପଦ ଆବର୍ତ୍ତୁଁ ମୋତେ ପାରି କରି ରଙ୍ଗେ
ସହି ତୀବ୍ର ଶରଜ୍ୱାଳା, ଅସିଘାତ ଅଙ୍ଗେ
ନିରାପଦେ ରଖି ଏହି ତଟିନୀ ସୈକତେ
ଯାହା କଲ ବନ୍ଧୁ ମୋର କି ଦେବିର ପଥେ ।
ଶୂନ୍ୟସାଥୀ ଫେରିଗଲେ ବିଷର୍ଣ୍ଣ କୁଟୀରେ
କି କହିବ ପଚାରିଲେ ମୁଖାଗତ ବୀରେ ?
ମୂକ ସାକ୍ଷୀ ଅଶ୍ରୁ ବିନା ଦେବ ଏ ସନ୍ତୋଷ
ଆକୁଳେ ବହିବ ଯେବେ ନୈରାଶ୍ୟ ବତାସ ?

———

# ଦେଉଳ ଉଦ୍ଧାର

## ଶ୍ରୀ ବାଞ୍ଛାନିଧି ଦାସ

ଗାଲ ମାଧବଟି ନାମ ଅଟେ ତାର
ଉତ୍କଳ ଦେଶ ନରେଶ,
ସୈନ୍ୟବଳ ସାଥେ ଘୋଡ଼ା ଚଢ଼ି ଦିନେ
ଭ୍ରମୁଁ ସିନ୍ଧୁତଟ ଦେଶ ।
ପବନ ବେଗରେ ଚାଲିଥିଲା ଘୋଡ଼ା
ସହସା ପଡ଼ିଲା ଝୁଣ୍ଟି,
ଝମ ଝମ ଶବ୍ଦ ଶୁଭିଲା, ଦିଶିଲା
ଦେଉଳର ଚକ ଗୋଟି ।
ଚକ ଚକ ଝଳେ ନୀଳଚକ୍ର ଗୋଟି
ଘୋଡ଼ାରୁ ଓହ୍ଲାଇ ରାଜା,
କିସ ଏ ଜିନିଷ ବୋଲି ଖୋଳିବାକୁ
ଲଗାଇଲେ ରାଜ୍ୟ ପ୍ରଜା ।
ପିମ୍ପୁଡ଼ିର ଧାଡ଼ି ପରି ସୈନ୍ୟବଳ
ପ୍ରଜାଏ ଅଛନ୍ତି ଲାଗି
ପାତାଳପୁରକୁ ବାଟ କାଟନ୍ତି କି
ଦିବା ବିଭାବରୀ ଜାଗି ।
ବାଲି ଖୋଳା ହେଲା ଘୁଞ୍ଚି ଘୁଞ୍ଚି ଧୀରେ
ଜାଗେ ଅପୂର୍ବ ଦେଉଳ
କଳା କଉଶଳେ ସାଜେ ମନୋହର
ଜଗତେ ନାହିଁ ତା ତୁଳ ।
କିଏ ଗଢ଼ିଥିଲା କାହାର ଦେଉଳ
ସେ କଥା ନ ହେଲା ଖୋଜା
ଦେଉଳ ଗଢ଼ିଛି ଗାଲମାଧବରେ
ସାଇଜେ ବାଜିଲା ବାଜା ।

———

# ଚିତୋର ଗଡ଼ର ଗଡ଼ିଆ ଲୋହାର ଜାତି

ଡକ୍ଟର ଅଧ୍ୟାପକ ଗୋପାଳଚନ୍ଦ୍ର ମିଶ୍ର

---

ସ୍ୱରଣ ବର୍ଷ ପରେ
ଚିତୋର ଗଡ଼ର        ଚନ୍ଦ୍ର ଚକୋର
ଚମକିଲା ଚନ୍ଦ୍ରରେ,
ଚମକିଲା କିଏ        ଚିତୋର ଦୁର୍ଗ
ଜନତାର ଅନ୍ତରେ ?

ଚିତୋର ଗଡ଼ର        ଅଧିବାସୀ ଯେତେ
"ହୁଅ ବାରେ ସାବଧାନ"
ଜନ୍ମଭୂମିକୁ        ଫେରଇ ପୁତ୍ର
ବହୁଦିନ ପରେ ଜାଣ ।

"ଆରେ ବଞ୍ଚିତ        ଆରେ ଲୁଣ୍ଠିତ
ଆରେ ଦୁର୍ମଦ ଜାତି
ଚିତୋର ଗଡ଼ର        ଅଧିବାସୀ ଯେତେ
ଲୋହାର କମାର ସାଥୀ ।

ଜନ୍ମଭୂମିରୁ        ହଟି ଯାଇଥିଲେ
ଚିତୋର ପୁତ୍ରଗଣ
ଜନ୍ମଭୂମିକୁ        ମୁକ୍ତ କରି ସେ
ଫେରିଅଛୁ ଆଜ ପୁଣ ।"

"ସ୍ୱରଣ ବର୍ଷ        ତଳ ଇତିହାସ
କଥା କହୁ କଥା କହୁ ।
ହେ ଚିତୋର ଗଡ଼        ମହିଳା ମୁକୁଟ
ଆଜି ପୁଣି ଶିରେ ବନ୍ଧୁ ।"

ଆକୁଳ ସ୍ମୃତି        ଚିତୋର ଦୁର୍ଗ
ଆକୁଳ ପୁଷ୍ପକୂଳ
ବାଦଶାହଙ୍କର        ଚିତୋର ରାଜ୍ୟ
ଅଧିକାର ହେଲା ମୂଳ ।

ମୋଗଲ କବଳୁ        ଚିତୋର ଦୁର୍ଗ
ମୁକ୍ତ କରିବା ଲାଗି,
ରାଣା ପ୍ରତାପର        ଧମନୀ ରକ୍ତ
ସେ ଦିନ ଉଠିଲା ଜାଗି ।

ସେହି ସେ ରକ୍ତ        ଚିତୋର ଲୋହାର
ଲେଖି ନେଇଥିଲା ଭାଲେ,
ଆଜି ସେ ରକ୍ତେ        ମନ୍ଦାର ଫୁଟେ
ମୁକ୍ତି ସକାଳ ଭଲେ ।

ଘୂରି ଘୂରି ଯେତେ        ବନ୍ଦୀ ଲୋହାର
ଚିତୋର ଗଡ଼ିଆ ଜାତି,
ଚିତୋର ଦୁର୍ଗ        ଚମ୍ବଲ କୂଳେ *
ଆଜିରେ ପାଇଛି ରାତି ।

ଏତେଦିନ ପରେ        ନିଜର ପତାକା
ନିଜେ ତୋଳିଧର ବୀରେ,
ସମ୍ଭାଷଣର        ଫୁଲମାଳ ଦିଅ
ଜନ୍ମଭୂମିର ଶିରେ ।

---

* ଚମ୍ବଲ ଗୋଟିଏ ନଦୀର ନାମ । ରାଣା ପ୍ରତାପଙ୍କ ସମୟରୁ ଦୁର୍ମଦ ଲୋହାର ଜାତି ସଂକଳ୍ପ କରିଥିଲେ ଯେ, ଚିତୋର ମୁକ୍ତ ନ ହେଲେ ସେମାନେ ଜନ୍ମଭୂମି ଚିତୋରରେ ଆଉ ପ୍ରବେଶ କରିବେ ନାହିଁ । ସେ ସଂକଳ୍ପ ପୂର୍ଣ୍ଣ ହେଲା ଯେତେବେଳେ, ୧୯୪୭ ମସିହା ପରେ ସ୍ୱାଧୀନ ଭାରତରେ ଲୋହାରମାନେ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହରୁଙ୍କ ନେତୃତ୍ୱରେ ପୁନଃ ଚିତୋର ପ୍ରବେଶ କଲେ ।

ତୋଳ ରେ ବଚ୍ଛ ।,      ତୋଳରେ ଝଣାଣ
ବୀର ସନ୍ତାନଗଣ,
ଘୃଣଶ ବର୍ଷ      ଶପଥ-ବଚନ୍,
ବଜ୍ର ତୁମର ବାଣ ।

ଏଇ ଚମ୍ପିସ୍ଥି,      ନଦୀ କୂଳେ କୂଳେ
ବନ ପ୍ରାନ୍ତର ମେଳେ
ଚିତୋର ଦୁର୍ଗ      ଗ୍ରୀଷ୍ମରେ ଜୁଳଇ
ଘୃଳଣ ବର୍ଷ ତଳେ,

ହୃଦରେ ଅନଳ      କଣ୍ଠେ ପିପାସା
ମର୍ମେ ଜାତିର ବ୍ୟଥା ।
ଆଜ ଇତିହାସ      କହୁ କ ପାରବ
ପ୍ରତାପ ମୁକ୍ତି କଥା ?

ବନ୍ଧ ନ ହୁଅ      ବନ୍ଦୀ ହେ ତୁମେ
ମୁକ୍ତ ହୋଇଛ ଆଜ,
ରାଣା ପ୍ରତାପର      ଶପଥ କ ହାସ୍ଯ
ଅଗ୍ନି ସମାନ ସାଜ,

ଜନ ସମାଗମ      ଏ ଶୋଭାଯାତ୍ରା,
ମନେ ପଡ଼େ ମନେ ପଡ଼େ,
ରାଜପୁତ ବୀର      ଲହୁ ରଞ୍ଜିତ୍
ଏହି ସେ ଚିତୋର ଗଡ଼େ ।

ଯେ ଦନ ବଦେଶୀ;      ଅଧିକାର କଲା,
ଶପଥ ନେଲେ ରେ ବୀର
ଜନ୍ମଭୂମିକୁ      ମୁକ୍ତ ନ କଲେ
ମୁଣ୍ଡ କ ଆନ ଗୀର !

ହେ ବୀର ବନ୍ଦୀ,      ପଦ ବନ୍ଦାଇ
ଚଢ଼ିଆ ଲୋହାର ଜାତ
ଟିର ଦୁର୍ବାର      ଚିତୋର ଗଡ଼ର
ଦୁର୍ମଦ ସେନାପତି !

ଆଜଠାରୁ କାହୁଁ, କେଉଁ ମୃଗ ସତେ
ଗୃରଶ ବରଷ ତଳେ,
ତୁମର ପୂର୍ବ ପୁରୁଷ ଚିତୋର
ଦୁର୍ଗରୁ ଦୂରେ ଚଳେ,

ତୁମର ପୂର୍ବ ପୁରୁଷ ହାତର
ଧନୁଶର ଉଠେ ଅଚି,
ଚିତୋର ଦୁର୍ଗ ମୁକ୍ତ ହୋଇବ
ମୋଗଲ ପିବେ ରେ ଫେର ।

ହେ ରାଜପୁତ୍ର କଣ୍ଠ ବେଦନା
ଚିତୋର ଗର୍ଭେ ଶୁଣ,
ଗୃରଶ ବର୍ଷ ତଳ ଅଙ୍କୁର
ଆଜ ଜନ୍ମନ ପୁଣ,

ଜୟ ହେ ଚିତୋର ଜୟ ଚିତୋରର
ଗଡ଼ିଆ ଲୋହାର ଜାଢ଼,
ଯେଉଁ ଧନୁଶର ଟାଣି ଦେଇଥିଲ,
ମନେ ରଖିଛ କି ସ୍ୱାଥୀ,

ମନେ ରଖିଥିବ ଭାରତ ଖଣ୍ଡ
ଟେକିଛୁ ଚିତୋର ମଥା
ଗୃରଶ ବର୍ଷ ପରେ ଚିତୋରର
ଶପଥ ପୂରଣ କଥା ।

---

# ଜାତିର ଡାକ

## ଶ୍ରୀ କୃଷ୍ଣଚନ୍ଦ୍ର ତ୍ରିପାଠୀ, ବି. ଏ.

ମନେ କି ପଡ଼ଇ ଅଜି ଉତ୍କଳର ସେନାପତି !
ବୀର ଗର୍ବେ ତୋଳିବାର ସ୍ୱାଧୀନ ବିଜୟ ଛତି
ଓଡ଼ିଶା ଜନନୀ ଶିରେ' ମନେ କିହେ ପଡ଼େ ତବ
କେମନ୍ତେ ଜାତିର କୀର୍ତ୍ତି ରଖିଥିଲ ଅଭିନବ,
କେମନ୍ତେ ସଇନ ଘୁରି କେଶରୀ ବିକ୍ରମେ ବୀର
ଘୁରିଥିଲ ଖଣ୍ଡା ଧରି, ଧରି ତଲୁଆର ତୀର
ସଂଗ୍ରାମ କବିତା କେତେ ଗାଉଥିଲେ ବୀରଦଳ
ଯାର ଅଗ୍ନି ବୋଲା ତାନ, ପରଶେ ଯବନେ ଦଳ ।
ଆସୁଥିଲ, ଲଙ୍ଘି ବିଲ ପ୍ରାନ୍ତର ପାହାଡ଼ ପଥ
ଗର୍ଜିଥିଲ ସିଂହପରି ନୋହି ଲଭେ ଅବନତ ।

ଜାତିର ପତାକା କେତେ ଉଡ଼ୁଥିଲ ଫର ଫର
ସ୍ୱାଧୀନ ଜୀବନ ଯେନ ଦିଶୁଥିଲ ଉଜ୍ଜ୍ୱଳ
ଜାତିର ଜୀବନ ତନ୍ତ୍ରେ ଗୌରବର ହୋମାନଳ
କେମନ୍ତେ ସେ ଜାଳିଥିଲ ଯେନ ଯୁଗ ଯୁଗାନ୍ତର ।
ହିମାଦ୍ରିର ପାଦ ତଳୁ ସୁଦୂର ନର୍ମଦା ଯାଏ
କେତେ ରଜା ମହାରଜା ସାମନ୍ତ ରାଉତରାଏ
ସସମ୍ଭ୍ରମେ ନୋଇଁ ଶିର ଏ ଜାତି ପତାକା ତଳେ
ସମ୍ମାନ ଓ ଗଉରବ ଦେଉଥିଲେ ଦଳେ ଦଳେ
ଓଡ଼ିଆର ଗର୍ବ ଦମ୍ଭ ଓଡ଼ିଆର ସ୍ୱାଧୀନତା—
ପାଶେ ନଇଁ ପଡ଼ୁଥିଲ ସବୁରି ତେଜସ୍ୱୀ ମଥା !

ଗଜପତି ରଜା ପାଇଁ ଏ ଦେଶ ପାଇବ ପିଲା
ସର୍ବସ୍ୱ ସଁପିବା ପାଇଁ ଟଳେ କି କୁଣ୍ଠିତ ଥିଲା ?
'ଜୟ ଗଜପତି ଜୟ' ରସନାର ପ୍ରତିସ୍ନାୟୁ
ଗାଉଥିଲା ଥିବାଯାଏ ଶେଷବିନ୍ଦୁ ପରମାୟୁ

(୭)

ଓଡ଼ିଶାର ଗଜପତି ଓଡ଼ିଶା ଅଖିଳ ଦେଶ
ଗୌରବର ସିଂହାସନେ ସ୍ୱାଧୀନ ସୁନ୍ଦର ବେଶ-
ସିଦ୍ଧ ଆତ୍ମା ରହିଥିଲା କେତେକେ ଧରି କାଳ କାଳ
ଜୀବନ ନାଡ଼ିରେ ବହି ଶୋଣିତର ଉଷ୍ଣଧାର ।
ବିଶ୍ୱ ଆଗେ ବଡ଼ ଯେବେ ଥିଲା ଏ ବିଶାଳ ଜାତି ।
ମୂଳେ ତା ପାଇକ ରକ୍ତ, ପାଇକ ଇସ୍ପାତ ଛାତି ।
ଉଠ ଉଠ ସେନାପତି ! ଏ ବୀର ପାଇକ ଜାତି
ଏ ମାଟିରେ ଥିବାଯାଏଁ ପତାଇବେ ବୀର ଛାତି—

ଗୁଳି ଓ କମାଣ ଆଗେ ଏ ଜାତି ଶୋଣିତ ଧାର
ଏ ଦେଶର ମୁକ୍ତି ଲାଗି ହେବ ଅଟେଷ୍ଟ ଦଳଆର ।
ଏ ଦେଶ ବଞ୍ଚିଛି ଯେବେ ବଞ୍ଚିଛି ପାଇକ ଲାଗି
ଯୁଗେ ଯୁଗେ ଏଇକଥା ଉଠିବ ଏ ବିଶ୍ୱେ ଜାଗି ।
ନୀଚ ସ୍ୱାର୍ଥ ବାସନାର ଯହିଁ ନାମ ଗନ୍ଧ ନାହିଁ
କେମନ୍ତେ ରହିବା ଥିର କେଶରୀ ଜୀବନ ପାଇଁ
ଉଠ ଉଠ ସେନାପତି ! ଆଉ କ୍ଷମା କର ତେଜ,
ଜୟ ହେ ଜନର ଜୟ ବଜାଅ ସଂଗ୍ରାମ ଭେରୀ ।

ମହେନ୍ଦ୍ର ଅଚଳ ଡାକେ, ଡାକେ ତୁଙ୍ଗ ମେଘାସନ
ଡାକେ ଗିରି ବରୁଣେଇ-ପ୍ରତିଶିଳା, ତରୁଗଣ
ଶୋଳଶ୍ରୀ ଖଲେଶ୍ୱ ଡାକେ ଡାକେ ପ୍ରତି ଗୋଡ଼ି ମାଟି
ଆସ ସେନାପତି ଆସ ବୀରତ୍ୱ ଗରବେ ଖ୍ୟାତି !
ଚିଲିକାର ନୀଳକାନ୍ତ ପ୍ରତିଊର୍ମି ଥରି ଥରି
ଡାକେ ଆସ ସେନାପତି ଆସ ତଲ୍‌ଆର ଧରି
ମହାନଦୀ କହେ ଆଜି କାଠଯୋଡ଼ୀ କାନେ କାନେ
ସେଇ ସେନାପତି ଏକା କରଇ ସଂଗ୍ରାମ ଟାଣେ
ଅଖିଳ ଦେଶର ପ୍ରତି ରେଣୁ ରେଣୁରେ ତବ
ଜୟମନ୍ତ୍ର ଖେଳ ବୁଲେ ଢାଳି ପୁଣ୍ୟ ଗଉରବ;

ବାନ୍ଧି ହେ ପଗଡ଼ି ଶିରେ ବାନ୍ଧି ବୀର ସେନାପତି,
ତୁମର ଶୋଣିତେ ନାହିଁ ଶଙ୍କା ପଦ ତଳେ ନତି
ତୁମର ଶୋଣିତେ ନାହିଁ ହାହାକାର ନୈରାଶ୍ୟର
ତୁମେ ଥିଲେ ଏ ଜାତିର ଅଛି ଶତ ସିଂହବଳ,

କରେ ତଲବାର ଧରି ଖାଲି ହୋଇଥିଲେ ଠିଆ
ସବୁରି ପରାଣେ ଜାଳି ଉଠିବ ସଘନେ ନିଆଁ
ବୃଦ୍ଧ ବୀର ସେନାପତି ! ତୁମରି ଇସ୍‌ପାତ ଦେହେ
ଯେତେ ଯେତେ ଖଣ୍ଡାଘାତ ଗୋଟି ଗୋଟି ହୋଇ ଶୋହେ,
ଦେଖ ଏଇ ସୈନ୍ୟଦଳ, ଶତସିଂହ ପରାକ୍ରମ
ବୁକୁ ତଳେ ଖେଳନ୍ତି, ତୋଳନ୍ତି ମଥା ହିମାଚଳ ସମ ।

ଜାଣିଚ କି ସେନାପତି ଜାଣିଚ କି କିଏ ତମେ ?
କି ଜାତି ନିଃଶ୍ୱାସ ଧରି ତୁମେ ଏ ବଞ୍ଚିଚ ଜଣେ !
ଏ ଜାତିର ମେରୁଦଣ୍ଡ ତୁମେ ବୀର ଅରିନ୍ଦମ
ତୁମରି ବାହୁରେ ଫୁଟେ ଏ ଜାତିର ପରାକ୍ରମ
ତୁମେ ବୀର ଏ ମାଟିରେ ମାଟି ହୋଇ ମରିପାର
ତୁମରି ସମାଧି ତଳୁ ଅସିବ ବୀର ଝଙ୍କାର ।
ଫୁଟୁଥିବ କାଳ ଦାନ୍ତ ହାଣି ଯୁଗ ଯୁଗ ଧରି
ସେ ମାଟି କପାଳେ ବୋଳି ଏ ଜାତି ଜୀବନ ତରି
ଏ ଧରଣୀ ସିନ୍ଧୁ ତଟରେ ବୀର ଦର୍ପେ ଝୁଲିଥିବ
ତୁମରି ଏକଇ ପ୍ରାଣ କୋଟି ପ୍ରାଣେ ଖେଳିଯିବ ।

ବୁଝିଚ କି ସେନାପତି ! ତୁମରି ଏ ଜୀର୍ଣ୍ଣ ପ୍ରାଣ
ସଂଗ୍ରାମେ ପାରିବ ନହିଁ ଦେଖାଇ ଗଭୀର ଟାଣ ?
ନିକଟରେ ପ୍ରତ୍ୟକ୍ଷ କି ନିଜେ ପାରୁନାହିଁ କରି
ଦେଶର ଦୈନ୍ୟରେ କେବେ ପିବ କି ଶୋଣିତ ମରି ?
ମିଥ୍ୟା ମିଥ୍ୟା ମହାଭ୍ରମ ଛାଡ଼ ସେ ଦୁର୍ବଳ ଆଶା
ଧର କରେ ତଲ୍‌ଆର ଫୁଟାଅ ଅନଳ ଭାଷା
ଜୀର୍ଣ୍ଣ ଅଙ୍ଗେ ତଡ଼ିତ୍‌ର କମ୍ପନ ଉଠିବ ଖେଳି
ଯୁବକର ବଳବୀର୍ଯ୍ୟ ଶିରାରେ ଶିରାରେ ଫେରି
ଦେବ ନବ ଉନ୍ମାଦନା ଉନ୍ମତ୍ତ କେଶରୀ ସମ
ଆସ ବୀର ସେନାପତି ! ତୁମେ ଏ ଜାତିର ବର୍ମ !

ବାଜଇ ସମର ବାଦ୍ୟ ଅସୀମ ଆକାଶ ଚିରି
ବାଜି ଉଠୁ ବୁକେ ତବ ଏ ଜାତି ଗୌରବ ଶିଙ୍ଗା
ଚାଲ୍ ସେନାପତି ଚାଲ୍ ଚାହିଁଛନ୍ତି ସୈନ୍ୟଦଳ
ଧରି ଏ ପତାକା କରେ ଏଇ ରଣ ଅଶ୍ୱେ ଚଢ଼ି

ଚାଲ ଏଇ ଦୁର୍ଗ ପଥେ ଚାଲ ହେ ନାଥର ବୀର
ହସ ଦ୍, ପରାଏ କର ସମୁନ୍ନତ ନିଜ ଶିର
କଟି ତଟେ ଖଣ୍ଡା ଝୁଲ୍ ପୃଷ୍ଠେ ଶୋଭୁ ଶରମୁଣା
ବୁକୁର ଅନଳ ଜଳୁ ଢାଳି ନବ ଉନ୍ମାଦନା
ନାଥପାଇଁ ଯୁଦ୍ଧ ଯେହୁ ଅକୁଣ୍ଠିତେ ପାରେ ପାତି
ତାକୁ ଏକା ସମାଦର କରେ ଏ ଧରଣୀ ମାଟି ।

ବୋଲ ଗଜପତି ଜୟ ! ଉତ୍କଳ-ଜନନୀ ଜୟ !
ଚାଲ ସେନାପତି ଚାଲ ଦେଇ ଦେଇ ବରାଭୟ
ଦଅ ନାରୀ ହୁଳହୁଳି, ଚାଲେ ବୃଦ୍ଧ ସେନାପତି
ନାଥର ପତାକା ତଳେ, ଦେଶ-ଜନନୀର କ୍ଷତି
ପାରନା ପାରନା ସହି, ଚାଲେ ଦୃପ୍ତ ସିଂହପରି
ସବୁରି ପରାଣ ତଳେ ବିଜୟର ଆଶା ଭରି
ଆସଇ ସୋହାଗଭରେ ! ବଜାଇ ସଂଗ୍ରାମେ ଭେରୀ
ଚାଲନ୍ତି ପାଇକ ଦଳ ଖଣ୍ଡା କରେ ଖେଳି ଖେଳି
ଅଶୀତି ବର୍ଷୀୟ ବୃଦ୍ଧ ଚାଲେ ଆଜି ରଣାଙ୍ଗନେ
ନାଥର କନ୍ଦନ ବାଣୀ ସହୁ ପାଗଲାନ୍ତ କ୍ଷଣେ ! !

———

ମୁଦ୍ରାକର—ଶ୍ରୀ ରଘୁନାଥ ପ୍ରସାଦ ମିଶ୍ର, ପ୍ରସାଦ ପ୍ରେସ୍, କଟକ-୨